# କୋଇଲା ଶିଳ୍ପର
# ଅଷ୍ଟମ ବେତନ ରାଜିନାମା

## ରାଷ୍ଟ୍ରାୟତ୍ତ ଶିଳ୍ପ ଶ୍ରମିକମାନଙ୍କ ପାଇଁ
## ଏକ ଐତିହାସିକ ଶିକ୍ଷା

ଡ଼. ଏମ୍.କେ. ପାଣ୍ଡେ
ସଭାପତି
ସି.ଆଇ.ଟି.ୟୁ ଓ ଅଲ୍ଇଣ୍ଡିଆ କୋଲ୍ ୱାରକର୍ସ ଫେଡେରେସନ୍

ଓଡିଶା କୋଲ୍‌ଫିଲ୍ଡ୍ସ ୱାରକର୍ସ ୟୁନିୟନ
ସି.ଆଇ.ଟି.ୟୁ

Digitized by srujanika@gmail.com

# COAL WAGE AGREEMENT
# LESSON FOR
# PUBLIC SECTOR WORKERS

By : **Dr. M. K. Pandhe**, President
CITU & All India Coal Workers Federation

*Published by :*

**Orissa Coalfields Workers Union**
VR-5/1, Kharvel Nagar, Unit-3, Bhubaneswar-1

*Composed and Printed By :*

LOKASIKHYA PRATISTHAN
Bhubaneswar

**Price : 5/-**

*Digitized by srujanika@gmail.com*

୫ଲକ୍ଷ କୋଇଲା ଖଣି ଶ୍ରମିକମାନଙ୍କ ପାଇଁ ୮ମ ବେତନ ଚୁକ୍ତିନାମା ଚୂଡ଼ାନ୍ତ କରିବାରେ ଅହେତୁକ ବିଳମ୍ବ ଦେଶବ୍ୟାପୀ କୋଇଲା ଶ୍ରମିକମାନଙ୍କ ମଧ୍ୟରେ ତୀବ୍ର ପ୍ରତିକ୍ରୀୟା ସୃଷ୍ଟି କରିଥିଲା । ୭ମ ଚୁକ୍ତିନାମାର କାର୍ଯ୍ୟକାଳ ୩୦ ଜୁନ୍ ୨୦୦୬ରେ ଶେଷ ହୋଇଥିବା ବେଳେ ୧:୭.୨୦୦୬ରୁ ନୂତନ ଚୁକ୍ତିନାମା କାର୍ଯ୍ୟକାରୀ ହେବା କଥା ।

ଦେଶର ସମସ୍ତ ରାଷ୍ଟ୍ରାୟତ୍ତ ଉଦ୍ୟୋଗରେ ଯୁଗ୍ମ ଦ୍ୱିପାକ୍ଷିକ କମିଟିମାନ ରହିଛି । ଉକ୍ତ କମିଟିରେ ଟ୍ରେଡ୍ ୟୁନିୟନ ପ୍ରତିନିଧି ଓ ଶିଳ୍ପ କର୍ତ୍ତୃପକ୍ଷମାନେ ବସି ସମୟାନୁସାରେ ମଜୁରୀ ଚୁକ୍ତି କରିଥାନ୍ତି। କୋଇଲା ଶିଳ୍ପରେ କିନ୍ତୁ ଏହି ଭିତ୍ତିରେ ଯୁଗ୍ମ ଦିପାକ୍ଷିକ କମିଟି ରହିଥିଲେ ମଧ ଠିକ ସମୟରେ ଦ୍ୱିପାକ୍ଷିକ ରାଜିନାମା ସମ୍ଭବପର ହୋଇ ନଥିଲା । କେନ୍ଦ୍ର କୋଇଲା ମନ୍ତ୍ରଣାଳୟ ଠିକ୍ ସମୟରେ ଏପରି ଦ୍ୱିପାକ୍ଷିକ ରାଜିନାମା ପାଇଁ ଅଷ୍ଟମ ଜେ.ବି.ସି.ସି.ଆଇ. ଗଠନ ନ କରି ବେତନ ରାଜିନାମାକୁ ବିଳମ୍ବିତ କରିଥିଲେ ।

ପବ୍ଲିକ ଏଣ୍ଟରପ୍ରାଇଜ୍ ଡିପାର୍ଟମେଣ୍ଟ (DPE) ପକ୍ଷରୁ ମଧ ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଗୁଡିକରେ ନିୟମିତ ବେତନ ନିର୍ଦ୍ଧାରଣ କ୍ଷେତ୍ରରେ ସଦା ସର୍ବଦା ପ୍ରତିବନ୍ଧକ ସୃଷ୍ଟି କରିଥାଏ । ଏହି କ୍ଷେତ୍ରରେ ଡ଼ି.ପି.ଇ ଚୁକ୍ତିନାମାର କାର୍ଯ୍ୟକାଳକୁ ୧୦ବର୍ଷ କରିବା ପାଇଁ ଜେଦ୍ ଧରିଥିଲା । ଏହା ସତ୍ତ୍ୱେ ମଧ, ରାଷ୍ଟ୍ରାୟତ୍ତ ଉଦ୍ୟୋଗ ମଧ୍ୟରୁ କେବଳ କୋଇଲା ଶିଳ୍ପରେ ହିଁ ବହୁ ଟଣା ଓଟରା ପରେ ୫ବର୍ଷିଆ ଚୁକ୍ତିନାମା ସହିତ ମହଙ୍ଗାଭତ୍ତାର ସଂପୂର୍ଣ୍ଣ ଭରଣା ପାଇଁ ଚୁକ୍ତି ସ୍ୱାକ୍ଷରିତ ହୋଇପାରିଛି । ୫ବର୍ଷିଆ ଚୁକ୍ତିନାମା ହେଲେ ୬୫ ଭାଗ ଏବଂ ୧୦ ବର୍ଷିଆ ଚୁକ୍ତିନାମା କ୍ଷେତ୍ରରେ ମହଙ୍ଗାଭତ୍ତାର ସଂପୂର୍ଣ୍ଣ ଭରଣା ପାଇଁ ଡ଼ି.ପି.ଇ ନିର୍ଦ୍ଦିଷ୍ଟ ଭାବରେ ଯୋର ଦେଇଥିଲା । କୋଇଲା ଶିଳ୍ପରେ CITU, INTUC, AITUC, HMS, BMS ଆଦି ୫ଟି ଫେଡ଼େରେସନ୍‌ର ୬ଦିନିଆ ଧର୍ମଘଟ ଡାକରା ଫଳରେ, କେନ୍ଦ୍ର ସରକାର ଏକ ୧୦ଜଣିଆ ମନ୍ତ୍ରୀସ୍ତରୀୟ ଗ୍ରୁପ୍ ଗଠନ କରି ଟ୍ରେଡ଼ ୟୁନିୟନମାନଙ୍କ ସହିତ ଆଲୋଚନା କରିବାକୁ ବାଧ ହୋଇଥିଲେ । ଧର୍ମଘଟ ଦିନ ଯେତିକି ପାଖେଇ



Digitized by srujanika@gmail.com

ଆସିଥିଲା, ମନ୍ତ୍ରୀସ୍ତରୀୟ ଗ୍ରୁପ୍ କୋଇଲା ଶ୍ରମିକମାନଙ୍କୁ ୫ବର୍ଷିଆ ଚୁକ୍ତି ସହ ମହଙ୍ଗାଭତ୍ତାର ସଂପୂର୍ଣ୍ଣ ଭରଣା ପାଇଁ ରାଜି ହେଲା ।

ଏତଦ୍‌ବ୍ୟତୀତ କେନ୍ଦ୍ର ସରକାର ରୁଗ୍‌ଣ କୋଇଲା କଂପାନୀ ଗୁଡ଼ିକୁ ରାଜିନାମାରୁ ବାଦ ଦେବା ପାଇଁ ଜିଦ୍ ଧରିଥିଲେ, କିନ୍ତୁ ଏହି ରାଜିନାମା ଫଳରେ ସରକାର ନିଜ ଜିଦ୍‌ରୁ ଓହରି ଯାଇଛନ୍ତି । କୋଇଲା ଶିଳ୍ପରେ ଇ.ସି.ଏଲ୍ ଏବଂ ବି.ସି.ସି.ଏଲ୍, ବି.ଏଫ୍.ଆଇ.ଆରକୁ ପଠାଯାଇଥିବା କୋଲ୍ ଇଣ୍ଡିଆର ୨ଟି ମୁଖ୍ୟ ରୁଗ୍‌ଣ କଂପାନୀ ଅଟନ୍ତି । ଯାହାହେଉ ଲାଭରେ ଚାଲୁଥିବା କୋଇଲା ଖଣିର ଶ୍ରମିକମାନେ ଯେଉଁ ମଜୁରୀ ପାଇବେ ରଗ୍‌ଣ ସଂସ୍ଥାର ଶ୍ରମିକମାନଙ୍କୁ ମଧ୍ୟ ସେହି ହାରରେ ମଜୁରୀ ଦିଆଯିବା ପାଇଁ ଟ୍ରେଡ୍ ୟୁନିୟନମାନେ ଗୁରୁତ୍ୱ ଦେଲାବେଳେ, ଦୃଢ଼ ଏକତାର ପରିଚୟ ଦେଇଛନ୍ତି । ଇ.ସି.ଏଲ୍ ଏବଂ ବି.ସି.ସି.ଏଲ୍‌କୁ ଚୁକ୍ତିନାମାରୁ ବାଦ ଦିଆଗଲେ ଅଧିକ ମଜୁରୀ ଦେବା ପାଇଁ କୋଇଲା ମ୍ୟାନେଜମେଣ୍ଟ ପ୍ରସ୍ତୁତ ଥିଲେ । କିନ୍ତୁ ଦେଶର ୫ଟି ଯାକ କୋଇଲା ଫେଡ଼େରେସନ ଏହି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ସମସ୍ତ କୋଇଲା ଶ୍ରମିକ ସମାନ ମଜୁରୀ ପାଇବା ଉପରେ ଯୋର ଦେଇଥିଲେ । କୋଇଲା ଶ୍ରମିକ ମାନଙ୍କର ଏହି ପରିପକ୍ୱତା ଆଜି ଅନ୍ୟାନ୍ୟ ରାଷ୍ଟ୍ରାୟତ୍ତ ଉଦ୍ୟୋଗର ଶ୍ରମିକମାନଙ୍କ ପାଇଁ ଏକ ଉଦାହରଣ ହୋଇ ପାରିଛି ।

କେନ୍ଦ୍ର ସରକାରଙ୍କ କୋଇଲା ମନ୍ତ୍ରଣାଳୟ ୮ମ ବେତନ ଚୁକ୍ତିନାମା ପାଇଁ ୨୧ ମଇ ୨୦୦୭ରେ ଜେ.ବି.ସି.ସି.ଆଇ ଗଠନ କଲେ । ଏହା ମଧ୍ୟରୁ କୋଲ୍ ଇଣ୍ଡିଆ ଏବଂ ସିଙ୍ଗରୌଲି କୋଲିଆରୀ ସମେତ (୧) ଟାଟା ଆଇରନ ଏବଂ ଷ୍ଟିଲ କଂପାନୀ (୨) ଇଣ୍ଟିଗ୍ରେଟେଡ୍ କୋଲ୍ ମାଇନିଙ୍ଗ୍ ଲିମିଟେଡ୍ (ICML) (୩) ବେଙ୍ଗଲ ଏମ୍‌ଟା କୋଲ ମାଇନିଙ୍ଗ ପ୍ରାଇଭେଟ୍ ଲିଃ (BECML), (୪) ଅନ୍ୟାନ୍ୟ ସମସ୍ତ ଘରୋଇ କୋଲ୍ କଂପାନୀ ଗୁଡିକୁ ଅନ୍ତର୍ଭୁକ୍ତ କରାଯାଇଥିଲା ।

କିନ୍ତୁ ଘରୋଇ କ୍ଷେତ୍ରର କୋଇଲା କଂପାନୀମାନେ ଦୃଢ଼ ସ୍ୱରରେ ଜେ.ବି.ସି.ସି.ଆଇରେ ଯୋଗ ଦେବାକୁ ମନା କରିବା ସହ ରାଷ୍ଟ୍ରାୟତ୍ତ ଉଦ୍ୟୋଗ କୋଇଲା କଂପାନୀମାନେ ଦେଉଥିବା ବେତନ ହାର ଦେବାକୁ ଅମଙ୍ଗ ହୋଇଥିଲେ । କେନ୍ଦ୍ର କୋଇଲା ମନ୍ତ୍ରଣାଳୟ ମଧ୍ୟ ଏହି ଘରୋଇ କଂପାନୀମାନଙ୍କୁ ଜାତୀୟ ଚୁକ୍ତିନାମା



Digitized by srujanika@gmail.com

ଅନୁସାରେ ବେତନ ଦେବାପାଇଁ ବାଧ କରିବା କ୍ଷେତ୍ରରେ ଅକ୍ଷମତା ପ୍ରକାଶ କଲେ । ସେମାନଙ୍କୁ ରାଷ୍ଟ୍ରାୟତ୍ତ ଉଦ୍ୟୋଗର କୋଇଲା କଂପାନୀର ମଜୁରୀ ଠାରୁ ବହୁ କମ୍ ମଜୁରୀ ଦେବା ପାଇଁ ବାଟ ଛାଡି ଦେଇଥିଲେ । ଏହା ଫଳରେ ଘରୋଇ କ୍ଷେତ୍ରର କୋଇଲା କଂପାନୀ ଗୁଡିକୁ ରାଷ୍ଟ୍ରାୟତ୍ତ କୋଇଲା କଂପାନୀ ସହିତ ଅନ୍ୟାୟ ଭାବରେ ପ୍ରତିଯୋଗୀତା ପାଇଁ ସୁଯୋଗ ଦେବା ସହ, ଲାଭ ରୋଜଗାରର ବାଟ ଦେଖାଇଥିଲା । କେନ୍ଦ୍ର ସରକାରଙ୍କ କୋଇଲା ଖଣି ଗୁଡିକୁ ଘରୋଇକରଣ କରିବାର ନୀତି ଘରୋଇ କ୍ଷେତ୍ରରେ କୋଇଲା କଂପାନୀମାନଙ୍କୁ ଜେ.ବି.ସି.ସି.ଆଇ ଠାରୁ ଅଲଗା ରଖିବା ଓ ଠିକା ଶ୍ରମିକଭାବେ ନିଯୁକ୍ତ କୋଇଲା ଶ୍ରମିକମାନଙ୍କୁ ଚରମ ଶୋଷଣ କରି ବେଆଇନ୍ ଭାବେ ବିପୁଳ ମୁନାଫା କମାଇବାର ମତଲବ ଏହା ଫଳରେ ପ୍ରମାଣିତ ହୋଇଥିଲା ।

## ଜେ.ବି.ସି.ସି.ଆଇର ପୃଷ୍ଠଭୂମୀ

୧୯୭୩ ମସିହାରେ କୋଇଲା ଖଣି ଜାତୀୟକରଣ ହେଲାପରେ ସମସ୍ତ ଜାତୀୟକରଣ କୋଇଲା ଶିଳ୍ପରେ ସାଧାରଣ ବେତନ ହାର ନିର୍ଦ୍ଧାରଣ କରିବା ପାଇଁ ଯୁଗ୍ମ ଦ୍ୱିପାକ୍ଷିକ କମିଟି ତଥା ଜେବି.ସି.ସି.ଆଇ (JBCCI) ଗଠନ କରାଯାଇଥିଲା । ଜାତୀୟକରଣ ପୂର୍ବରୁ ମଜୁରୀ ଏବଂ କାର୍ଯ୍ୟ ସର୍ତ୍ତାବଳୀ କୋଇଲା କଂପାନୀ ଗୁଡ଼ିକରେ ଅଲଗା ଅଲଗା ଥିଲା ଏବଂ ଶ୍ରମିକମାନଙ୍କ ପାଇଁ ସକଳ କ୍ଷେତ୍ରରେ ସମାନ ହାର ମଜୁରୀ ହାସଲ କରିବା ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ଥିଲା । ଗଠିତ ଜେବି.ସି.ସି.ଆଇରେ କେବଳ INTUC, AITUC ଓ CITU ର ପ୍ରତିନିଧିମାନଙ୍କୁ ସାମିଲ କରାଯାଇଥିଲା । ପରବର୍ତ୍ତି ଅବସ୍ଥାରେ ଦ୍ୱିତୀୟ ଜେବି.ସି.ସି.ଆଇ ଗଠନ ବେଳକୁ HMS ଏବଂ BMS ଯୋଗ ଦେଇଥିଲେ ।

ଜେ.ବି.ସି.ସି.ଆଇ ଦ୍ୱାରା ସ୍ୱାକ୍ଷରିତ ବୁଝାମଣା ପତ୍ର (MOU) କେନ୍ଦ୍ର କୋଇଲା ମନ୍ତ୍ରଣାଳୟର ଅନୁମୋଦନ ପାଇଁ ପଠାଯାଇ ଥିଲା । ସେତେବେଳେ କେନ୍ଦ୍ର ସରକାର ଘରଭଡ଼ା (HRA) ବାବଦ ଚୁକ୍ତି ପରିବର୍ତ୍ତନ କରିଥିଲେ । ଦ୍ୱିପାକ୍ଷିକ ରାଜିନାମାରେ ଗୃହୀତ ଘରଭଡା ଭତ୍ତା କମାଇବାକୁ ନେଇ କେନ୍ଦ୍ର ସରକାରଙ୍କ ହସ୍ତକ୍ଷେପକୁ ସି.ଆଇ.ଟି.ୟୁ ଦୃଢ ଭାବରେ ନାପସନ୍ଦ କରିଥିଲା ଏବଂ ଏହି ସଂପର୍କରେ ନିଜର ଭିନ୍ନମତ ରେକର୍ଡ କରାଇଥିଲା ।



Digitized by srujanika@gmail.com

ଜେ.ବି.ସି.ସି.ଆଇ ଦ୍ୱାରା ବର୍ତ୍ତମାନ ସୁଦ୍ଧା ୭ଟି ମଜୁରୀ ଚୁକ୍ତିନାମା ହୋଇ ସାରିଛି । ଏହା ନିମ୍ନପ୍ରକାର ଅଟେ :

**NATIONAL COAL WAGE AGREEMENTS**

| NCWA | Signed on | Period | Basic minimum wage |
|---|---|---|---|
| I-4yrs | 11.12.74 | 1.01.75 to 31.12.78 | Rs. 260/- |
| II-4yrs | 11.08.79 | 1.01.79 to 31.12.82 | Rs. 390/- |
| III-4yrs | 11.11.83 | 1.01.83 to 31.12.86 | Rs. 550/- |
| IV-4$^{1}/_{2}$yrs | 27.07.89 | 1.01.87 to 30.6.91 | Rs. 1000/- |
| V-5yrs | 19.01.96 | 1.07.91 to 30.6.96 | Rs. 1700/- |
| VI-5yrs | 23.12.00 | 1.07.96 to 30.6.01 | Rs. 3300/- |
| VII-5yrs | 15.07.05 | 1.07.01 to 30.6.06 | Rs. 5500/- |

ସି.ଆଇ.ଟି.ୟୁ ପ୍ରଥମେ ଷଷ୍ଠ ଚୁକ୍ତିନାମାରେ ସ୍ୱାକ୍ଷର କରି ନଥିଲା । କାରଣ, ଚୁକ୍ତିନାମା ଯୋଗୁ ହୋଇଥିବା ମଜୁରୀ ବୃଦ୍ଧି ଅନ୍ୟାନ୍ୟ ରାଷ୍ଟ୍ରାୟତ୍ତ ଉଦ୍ୟୋଗର ଶ୍ରମିକମାନଙ୍କ ତୁଳନାରେ ଅନେକ କମ୍ ଥିଲା । କମ୍ ମଜୁରୀ ବୃଦ୍ଧିକୁ ବିରୋଧ କରି ସି.ଆଇ.ଟି.ୟୁ ଏକାକୀ ୨୦ରୁ ୨୨ ନଭେମ୍ବର ୨୦୦୦ରେ ୩ଦିନ ଯାଏ ଧର୍ମଘଟ କରିଥିଲା, ଯାହା ଫଳରେ ବର୍ଦ୍ଧିତ ହାରରେ ବେତନ ଚୁକ୍ତିନାମା ସମ୍ଭବ ହୋଇପାରିଲା ।

## ମିଳିତ ଜାତୀୟ କନ୍‌ଭେନସନ୍

ଦେଶବ୍ୟାପୀ କୋଇଲା ଶ୍ରମିକମାନଙ୍କ ମଧ୍ୟରେ ଗଭୀର ଅସନ୍ତୋଷକୁ ଦେଖି ଏ.ଆଇ.ସି.ଡବ୍ଲ୍ୟୁ.ଏଫ୍ ଏବଂ ସି.ଆଇ.ଟି.ୟୁ ୫ଟି ଫେଡ଼େରେସନ୍‌କୁ ଏକତ୍ରିତ କରିବା ପାଇଁ ଉଦ୍ୟମ କରିଥିଲା । ସମସ୍ତ ଫେଡ଼େରେସନ୍‌ର ସକାରାତ୍ମକ ମନୋଭାବ ଯୋଗୁ ଆନ୍ଦୋଳନର କାର୍ଯ୍ୟକ୍ରମ ସ୍ଥିର କରିବାକୁ ୨୬ଅଗଷ୍ଟ ୨୦୦୭ରେ କୋଲକାତାର୍ ୟୁନିଭରସିଟି ସେଣ୍ଟେନାରି ହଲ୍ ଠାରେ ମିଳିତ କନ୍‌ଭେନସନ୍ ସଂଗଠିତ ହୋଇଥିଲା । କନ୍‌ଭେନସନ୍‌ରେ ୬୦୦ରୁ ଅଧିକ ପ୍ରତିନିଧି ଯୋଗ ଦେଇଥିଲେ । ସମସ୍ତ ସ୍ତରର ଶ୍ରମିକମାନଙ୍କ ମଧ୍ୟରେ ଅସାଧାରଣ ଏକତା ଏଠାରେ ପ୍ରତିଫଳିତ ହୋଇଥିଲା । ପ୍ରାୟ ସମସ୍ତ ବକ୍ତା ଦେଶବ୍ୟାପୀ ଧର୍ମଘଟ ସହିତ ଆନ୍ଦୋଳନର ଆବଶ୍ୟକତା ଉପରେ ଯୋର୍ ଦେଇଥିଲେ । କୋଇଲା ଶ୍ରମିକମାନଙ୍କ ଜ୍ୱଳନ୍ତ ସମସ୍ୟାକୁ ତୋଳି ଧରିବା ପାଇଁ ୨୦



Digitized by srujanika@gmail.com

ଡ଼ିସେମ୍ବର ୨୦୦୭ରେ କୋଲକାତାସ୍ଥିତ କୋଲ୍ ଇଣ୍ଡିଆର ମୁଖ୍ୟ ଦପ୍ତରରେ ବଡ଼ ଧରଣର ମିଳିତ ବିକ୍ଷୋଭ ସହିତ ଦେଶବ୍ୟାପୀ ମିଳିତ ଆନ୍ଦୋଳନର କାର୍ଯ୍ୟକ୍ରମ ସ୍ଥିର କରାଯାଇଥିଲା ।

କୋଲ୍ ଇଣ୍ଡିଆର ମୁଖ୍ୟ ଦପ୍ତର ସାମନାରେ ସମସ୍ତ ଟ୍ରେଡ୍ ୟୁନିୟନମାନଙ୍କ ପକ୍ଷରୁ ୨୦ ଡ଼ିସେମ୍ବର ୨୦୦୭ର ମିଳିତ କୋଇଲା ଶ୍ରମିକ ବିକ୍ଷୋଭ ଥିଲା ସବୁଠାରୁ ବଡ଼ ଧରଣର ବିକ୍ଷୋଭ । ଏଥି ପୂର୍ବରୁ ସମସ୍ତ କୋଇଲା କଂପାନୀରେ କଂପାନୀ ସ୍ତରୀୟ ମିଳିତ ଶ୍ରମିକ ବିକ୍ଷୋଭ ସଂଗଠିତ ହୋଇସାରିଥିଲା । ୧୦ହଜାର କୋଇଲା ଶ୍ରମିକ ସମ୍ମିଳିତ ହୋଇଥିବା ଏହି ଶକ୍ତିଶାଳୀ ବିକ୍ଷୋଭ ରାଲିରେ ବକ୍ତାମାନେ ବୁଝାମଣା ଆଲୋଚନାକୁ ବିଳମ୍ବିତ କରାଯାଉ ଥିବାରୁ 'ଉପା' ସରକାର ଏବଂ କୋଲ୍ ଇଣ୍ଡିଆ ମ୍ୟାନେଜମେଣ୍ଟକୁ ତୀବ୍ର ଆକ୍ରମଣ କରିଥିଲେ । ସେମାନେ ୫ବର୍ଷିଆ ବେତନ ଚୁକ୍ତିନାମା ପାଇଁ ଯୋର୍ ଦେବା ସହ କୌଣସିମତେ ୧୦ବର୍ଷିଆ ଚୁକ୍ତିନାମା ଗ୍ରହଣୀୟ ହେବ ନାହିଁ ବୋଲି ଘୋଷଣା କରିଥିଲେ । ଘରୋଇ ଉଦ୍ୟୋଗକୁ କୋଇଲା ବ୍ଲକ ହସ୍ତାନ୍ତରକୁ ନିନ୍ଦା କରିବା ସହ ଅବିଳମ୍ବେ ଏହା ପ୍ରତ୍ୟାହାର କରିବାକୁ ଦାବି କରାଯାଇଥିଲା । ବକ୍ତାମାନେ ଠିକା ଶ୍ରମିକମାନଙ୍କର ଦାବି ସଂପର୍କରେ ଆଲୋଚନା କରି କୋଲ୍ ଇଣ୍ଡିଆର ସର୍ବନିମ୍ନ ଦରମା ହାର ପ୍ରଦାନ ପାଇଁ ଦାବି କରିଥିଲେ । କୋଇଲା ଶିଳ୍ପର ଦ୍ରୁତ ବିକାଶ ପାଇଁ ଉତ୍ପାଦନ ଖର୍ଚ୍ଚ କମ୍ କରି କୋଲ୍ ଇଣ୍ଡିଆକୁ ଗୋଟିଏ କଂପାନୀରେ ପରିଣତ କରିବାକୁ ମଧ୍ୟ ଦାବି ଉଠିଥିଲା । ରାଲି ପରେ ୫ଟି ଯାକ ଫେଡ଼େରେସନ୍‌ର ପ୍ରତିନିଧି ମଣ୍ଡଳୀ କୋଲ୍ ଇଣ୍ଡିଆର ଚେୟାରମ୍ୟାନଙ୍କୁ ସାକ୍ଷାତ କରି କୋଇଲା ଶ୍ରମିକମାନଙ୍କ ଦାବି ଗୁଡ଼ିକ ଉତ୍‌ଥାପନ କରିଥିଲେ । ସେମାନେ ମଧ୍ୟ କୋଇଲା ମନ୍ତ୍ରଣାଳୟର ପରିସୀମା ମଧ୍ୟରେ ଥିବା ଦାବି ଗୁଡ଼ିକୁ ତାଙ୍କ ମାଧ୍ୟମରେ ସରକାରଙ୍କୁ ଅବଗତ କରାଇଥିଲେ ।

୨୦ ଡ଼ିସେମ୍ବର ୨୦୦୭ର ବିକ୍ଷୋଭ କୋଇଲା ଖଣି ଶ୍ରମିକମାନଙ୍କ ମଧ୍ୟରେ ପ୍ରବଳ ଉତ୍ସାହ ସୃଷ୍ଟି କରିଥିଲା । ସେମାନେ ଦେଶବ୍ୟାପୀ ଆନ୍ଦୋଳନ ଓ ଧର୍ମଘଟ ପାଇଁ ପ୍ରସ୍ତୁତ ହୋଇଥିଲେ । କିନ୍ତୁ କୋଲ୍ ଇଣ୍ଡିଆ ମ୍ୟାନେଜମେଣ୍ଟ କୋଇଲା ଶିଳ୍ପର ୫ଟି ଯାକ ଫେଡ଼େରେସନ ପକ୍ଷରୁ ମିଳିତ ଭାବେ ଉତ୍‌ଥାପିତ ସମସ୍ୟା ଗୁଡ଼ିକ ସମାଧାନ କରିବା ପାଇଁ ନିର୍ଦ୍ଦିଷ୍ଟ ପଦକ୍ଷେପ ନେବାରେ ବିଫଳ ହୋଇଥିଲା । କୋଲ୍ ଇଣ୍ଡିଆର



Digitized by srujanika@gmail.com

ଚେୟାରମ୍ୟାନ୍ ସରକାରଙ୍କ ପରାମର୍ଶ ଅନୁସାରେ ୧୦ବର୍ଷିଆ ଚୁକ୍ତିନାମା ସପକ୍ଷରେ ଓକିଲାତି କରି ଖବରକାଗଜରେ ବିବୃତ୍ତି ଦେଲେ । ବୟସ୍କ ଶ୍ରମିକମାନେ ଅଧିକ ବେନିଫିଟ୍ ପାଇବାର ବାହାନା ଦେଖାଇ ମ୍ୟାନେଜମେଣ୍ଟ ଆଇ.ଏନ୍.ଟି.ୟୁ.ସିର ଗୋଟିଏ ଗୃପ୍‌କୁ ୧୦ବର୍ଷିଆ ଚୁକ୍ତିନାମା ପାଇଁ ପ୍ରବର୍ତ୍ତାଇ ନିଜପଟକୁ ନେଇଯାଇଥିଲେ । କୋଇଲା ଶ୍ରମିକ ଆନ୍ଦୋଳନର ଚାପ ଫଳରେ ୯ ଏପ୍ରିଲ୍ ୨୦୦୮ରେ ମୂଳ ବେତନର ୧୫ଭାଗ ମଧ୍ୟବର୍ତ୍ତିକାଳୀନ ଭତ୍ତା ଦେବାକୁ ମ୍ୟାନେଜମେଣ୍ଟ ରାଜି ହୋଇଥିଲା । ସେତେବେଳେ କିନ୍ତୁ, ଶ୍ରମିକମାନେ ମୋଟ୍ ବେତନର ୨୦ଭାଗ ମଧ୍ୟବର୍ତ୍ତୀ କାଳୀନ ଭତ୍ତା ଦାବି କରିଥିଲେ ।

କେନ୍ଦ୍ର କୋଇଲା ମନ୍ତ୍ରୀ ୫ଟି ଯାକ ଫେଡ଼େରେସନ୍‌ର ନେତାମାନଙ୍କୁ ମିଳିତ ଭାବେ ଡାକି ଦାବି ଗୁଡ଼ିକ ସଂପର୍କରେ ଆଲୋଚନା କରିବା ପରିବର୍ତ୍ତେ ଚୁକ୍ତିନାମାର ମିଆଦ ସଂପର୍କରେ ପୃଥକ ପୃଥକ ଭାବେ ଫେଡ଼େରେସନ୍ ଗୁଡ଼ିକ ସହିତ ପରାମର୍ଶ କରିଥିଲେ । ୫ଟି ଯାକ ଫେଡ଼େରେସନ୍‌ର ୫ବର୍ଷିଆ ଚୁକ୍ତିନାମା ପାଇଁ ମିଳିତ ଅବସ୍ଥାନ ସତ୍ତ୍ୱେ କୋଲ୍ ଇଣ୍ଡିଆ ଚେୟାରମ୍ୟାନ୍ ୫ ବର୍ଷିଆ ଚୁକ୍ତିନାମା ପାଇଁ ସମ୍ମତ ହୋଇ ନଥିଲେ ।

## ଅଲ୍ ଇଣ୍ଡିଆ କୋଲ୍ ୱାରକର୍ସ ଫେଡ଼େରେସନ୍‌ର ଉଦ୍ୟମ

କୋଇଲା ଶ୍ରମିକମାନଙ୍କ ମଧ୍ୟରେ ବର୍ଦ୍ଧିତ ଅସନ୍ତୋଷ ଏବଂ କୋଇଲା ଶିଳ୍ପରେ କାର୍ଯ୍ୟ କରୁଥିବା ଟ୍ରେଡ୍ ୟୁନିୟନମାନଙ୍କର ଭୂମୀକା ସଂପର୍କରେ ଆଗୁଆ ଶ୍ରମିକ ମାନଙ୍କ ମଧ୍ୟରେ ସମାଲୋଚନାକୁ ଦୃଷ୍ଟିରେ ରଖି ଏ.ଆଇ.ସି.ଡ଼ବ୍ଲ୍ୟୁ.ଏଫ୍ ଅକ୍ଟୋବର ୨୦୦୮ରେ ଏହାର କାର୍ଯ୍ୟକାରୀ କମିଟି ବୈଠକରେ ଅଷ୍ଟମ ଚୁକ୍ତିନାମାର ବିଳମ୍ବ ଯୋଗୁ ଶ୍ରମିକମାନଙ୍କ ଯଥାର୍ଥ ଅସନ୍ତୋଷକୁ ଦୂର କରିବା ପାଇଁ କେତେକ ଆନ୍ଦୋଳନ କାର୍ଯ୍ୟକ୍ରମ ଗ୍ରହଣ କରିବା ପାଇଁ ମନ ସ୍ଥିର କରିଥିଲା । କୋଇଲା ଶ୍ରମିକମାନେ ସମ୍ମୁଖୀନ ହୋଇଥିବା ସମସ୍ୟାର ସମାଧାନ ପାଇଁ ଜେ.ବି.ସି.ସି.ଆଇ ଅର୍ନ୍ତଭୁକ୍ତ ୟୁନିୟନମାନେ ଚିନ୍ତିତ ନୁହନ୍ତି ବୋଲି ଜେ.ବି.ସି.ସି.ଆଇ ବାହାରେ ଥିବା ୟୁନିୟନମାନେ ଚଳାଇଥିବା ପ୍ରଚାରକୁ ପ୍ରତିହତ କରିବାର ଆବଶ୍ୟକତା ମଧ୍ୟ ଥିଲା । ଆଇ.ଏନ୍.ଟି.ୟୁ.ସି ନେତୃତ୍ୱର ଏକ ଅଂଶ ୧୦ବର୍ଷିଆ ଚୁକ୍ତିନାମା ପାଇଁ ଯୁକ୍ତିକରି ଚଳାଇଥିବା ପ୍ରଚାରକୁ ପରାସ୍ତ କରିବାର ଗୁରୁତ୍ୱକୁ ଏ.ଆଇ.ସି.ଡବ୍ଲ୍ୟୁ.ଏଫ୍ ଅନୁଭବ କରିଥିଲା । ଫେଡ଼େରେସନ୍



Digitized by srujanika@gmail.com

ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଟ୍ରେଡ଼ ୟୁନିୟନସ୍ କମିଟି (CPSTU) ର ପରାମର୍ଶ ଏବଂ ୨୦ ଡ଼ିସେମ୍ବର ୨୦୦୭ର ମିଳିତ ବିକ୍ଷୋଭରେ ଉଠିଥିବା ଦାବି ଗୁଡ଼ିକୁ ନେଇ ଆଗେଇଯିବାକୁ ନିଷ୍ପତ୍ତି ନେଇଥିଲା ।

ଅଲ୍ ଇଣ୍ଡିଆ କୋଲ୍ ଓ୍ୱାର୍କର୍ସ୍ ଫେଡ଼େରେସନ୍‌ର କାର୍ଯ୍ୟକାରୀ କମିଟି କୋଲ୍ ଇଣ୍ଡିଆ ମ୍ୟାନେଜମେଣ୍ଟକୁ ୫ବର୍ଷିଆ ଚୁକ୍ତିନାମା ସହିତ ଆଗୁଆ ରାଜିନାମା ପାଇଁ ବାଧ କରିବାକୁ ୧୮-୧୯ ଡ଼ିସେମ୍ବର ୨୦୦୮ରେ ୨ଦିନିଆ ଧର୍ମଘଟ ଡାକରା ଦେଇଥିଲା । ୨୦୦୯ ଏପ୍ରିଲ-ମଇ ମାସରେ ପାର୍ଲିଆମେଣ୍ଟ ନିର୍ବାଚନ ପରିପ୍ରେକ୍ଷୀରେ ୨୦୦୯ ଫେବୃୟାରୀ ପୂର୍ବରୁ ଚୁକ୍ତିନାମା ନକଲେ ନିର୍ବାଚନ ଆଇନ୍ କୋଇଲା ମନ୍ତ୍ରଣାଳୟ ଠାରୁ ଚୁକ୍ତିନାମା ପାଇଁ ଅନୁମତି ପାଇବାରେ ବାଧକ ହେବ । ଏ ସଂପର୍କରେ ଶ୍ରମିକମାନଙ୍କ ମଧ୍ୟରେ ପ୍ରଚାର କରିବା ପାଇଁ ଫେଡ଼େରେସନ୍ ନିଷ୍ପତ୍ତି ଗ୍ରହଣ କରିଥିଲା । ତେଣୁ AICWF କୋଇଲା ଶିଳ୍ପର ସମସ୍ତ ଫେଡ଼େରେସନ୍‌କୁ ମିଳିତ ଭାବେ ଧର୍ମଘଟ କରିବାକୁ ଆହ୍ୱାନ ଦେଇଥିଲା ।

AICWF ନିଷ୍ପତ୍ତିକୁ ଶ୍ରମିକମାନେ ସ୍ୱାଗତ କରିଥିଲେ । ଫେଡ଼େରେସନ୍‌ର ମିଟିଂ ଗୁଡ଼ିକରେ ବିପୁଳ ସଂଖ୍ୟାରେ ଶ୍ରମିକମାନଙ୍କ ଯୋଗଦାନ ଦେଶବ୍ୟାପୀ ଆନ୍ଦୋଳନ ପାଇଁ ଦୃଢ଼ ସମର୍ଥନର ସୂଚନା ମିଳିଥିଲା । ସାରା ଦେଶରେ କୋଇଲା ଶ୍ରମିକମାନଙ୍କର ଲଢୁଆ ମନୋଭାବକୁ ଦେଖି INTUC, AITUC, HMS ଏବଂ BMS ଫେଡ଼େରେସନ୍ ଗୁଡିକ ସି.ଆଇ.ଟି.ୟୁ ଫେଡ଼େରେସନ୍‌ର ୧୮-୧୯ ଡିସେମ୍ବରର ଧର୍ମଘଟ ତାରିଖକୁ ଘୁଞ୍ଚାଇବାକୁ ଅନୁରୋଧ କରିଥିଲେ । AICWF ଅନ୍ୟାନ୍ୟ ଫେଡ଼େରେସନ୍ ମାନଙ୍କର ଏହି ସକରାତ୍ମକ ମନୋଭାବକୁ ସ୍ୱାଗତ କରି ସମସ୍ତ ୟୁନିୟନ ଦ୍ୱାରା ମିଳିତ ସଂଗ୍ରାମକୁ ଆଗେଇ ନେବା ପାଇଁ ୧୩ ଡ଼ିସେମ୍ବର ୨୦୦୮ରେ ଏକ ମିଳିତ ବୈଠକ ଆୟୋଜନ କରିଥିଲା ।

କୋଲକାତାର ଆଇ.ଏନ୍.ଟି.ୟୁ.ସି ଅଫିସରେ ଅନୁଷ୍ଠିତ ବୈଠକରେ ୫ଟି ଫେଡ଼େରେସନ୍ ଯୋଗ ଦେଇଥିଲେ । ଫେଡ଼େରେସନ୍ ଗୁଡିକ ପକ୍ଷରୁ ମିଳିତ ଭାବେ ସାଧାରଣ ଦାବିପତ୍ର ଉପରେ ଜାନୁୟାରୀ ୫ରୁ ୭, ୨୦୦୯ ରେ ତିନି ଦିନିଆ ଧର୍ମଘଟ ପାଇଁ ଡାକରା ଦେବାକୁ ନିଷ୍ପତ୍ତି ହୋଇଥିଲା । ବୈଠକ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ



Digitized by srujanika@gmail.com

ମଧ୍ୟରେ ଅନୁଷ୍ଠିତ ହୋଇଥିଲା ଏବଂ କୋଇଲା ଶ୍ରମିକମାନଙ୍କର ବୃହତ୍ତର ସ୍ୱାର୍ଥ ଏବଂ ମିଳିତ ସଂଗ୍ରାମର ସ୍ୱାର୍ଥ ଦୃଷ୍ଟିରୁ AICWF ୧୮-୧୯ ଡ଼ିସେମ୍ବର ୨୦୦୯ର ଧର୍ମଘଟ ପ୍ରତ୍ୟାହାର କରିନେଇ ଥିଲା ।

କୋଇଲା ଫେଡ଼େରେସନ୍ ଗୁଡିକ ପକ୍ଷରୁ ଦେଶବ୍ୟାପୀ ଧର୍ମଘଟର ଡ଼ାକରା ସମସ୍ତ ଖଣିରେ ବାତାବରଣକୁ ସରଗରମ କରିଥିଲା । ୟୁନିୟନ କାର୍ଯ୍ୟକର୍ତ୍ତାମାନେ ମିଳିତ ଭାବେ ରାଲି ଏବଂ ବିକ୍ଷୋଭମାନ ସଂଗଠିତ କରିଥିଲେ ।

କୋଇଲା ଶ୍ରମିକମାନଙ୍କର ଆନ୍ଦୋଳନ ଇତିହାସରେ ଜାତୀୟ ସ୍ତରରେ ଏପରି ବୃହତ୍ତର ଏକତା କେବେ ହେଲେ ବି ସମ୍ଭବପର ହୋଇପାରି ନଥିଲା। ୧୩ ଡ଼ିସେମ୍ବର ବୈଠକରେ ପ୍ରଜ୍ୱଳିତ ଅଗ୍ନିକଣା ସାରା ଭାରତରେ ଦାବାନଳ ଭଳି ବ୍ୟାପିଗଲା ଏବଂ ସମସ୍ତ କୋଇଲା ଖଣିରେ ସଂପୂର୍ଣ୍ଣ ଧର୍ମଘଟ ଅବଶ୍ୟମ୍ଭାବୀ ହୋଇ ପଡିଥିଲା ।

ଶ୍ରମିକମାନଙ୍କର ସଂଗ୍ରାମୀ ମନୋଭାବ ଏବଂ ଦେଶର ଅନେକ ବିଦ୍ୟୁତ ଉତ୍ପାଦନ କେନ୍ଦ୍ର ବନ୍ଦ ହେବାର ସମ୍ଭାବନାକୁ ଦେଖି କୋଇଲା ମନ୍ତ୍ରଣାଳୟ, ଏବଂ କୋଲ ଇଣ୍ଡିଆ ଏବଂ ସିଙ୍ଗରାଣୀ କୋଇଲା ଖଣି ମ୍ୟାନେଜମେଣ୍ଟ ତଳକୁ ଖସି ଅଷ୍ଟମ ଚୁକ୍ତିନାମା ପାଇଁ ରାଜିନାମା କରିବାକୁ ନିଷ୍ପତ୍ତି କଲେ । ଦାବି ଗୁଡିକ ସଂପର୍କରେ ୟୁନିୟନ ସହିତ ଆଲୋଚନା ପାଇଁ ଖୁବ୍ ତରବରରେ ୨୬-୨୭ ଡିସେମ୍ବରରେ ଭୁବନେଶ୍ୱର ଠାରେ ଜେ.ବି.ସି.ସି.ଆଇ ବୈଠକ ଡ଼କା ଯାଇଥିଲା ।

କେନ୍ଦ୍ର କୋଇଲା ରାଜ୍ୟ ମନ୍ତ୍ରୀ ୨୬ ଡ଼ିସେମ୍ବରରେ ସି.ସି.ଏଲକୁ ଆସୁଥିବାର ସୂଚନା ମିଳିବା କ୍ଷଣି ହଜାର ହଜାର କୋଇଲା ଖଣି ଶ୍ରମିକ ଆଖ ପାଖ କୋଇଲା ଖଣିରୁ ବାହାରି ଆସି ରାଞ୍ଚିର ସି.ସି.ଏଲ୍ ମୁଖ୍ୟ କାର୍ଯ୍ୟାଳୟକୁ ଘେରାଉ କରିଥିଲେ । ସେମାନେ ୫ ବର୍ଷିଆ ଚୁକ୍ତିନାମା ପାଇଁ ଦାବି କରିଥିଲେ । ମନ୍ତ୍ରୀ ମହୋଦୟ ରାଞ୍ଚିରେ ପହଞ୍ଚିଥିଲେ ମଧ୍ୟ ସେ ତାଙ୍କର ସମସ୍ତ ପ୍ରକାଶ୍ୟ କାର୍ଯ୍ୟକ୍ରମକୁ ବାତିଲ କରିଥିଲେ ।

ଭୁବନେଶ୍ୱର ବୈଠକରେ ୫ ବର୍ଷିଆ ଚୁକ୍ତିନାମା ପାଇଁ ନିଷ୍ପତ୍ତି ହୋଇଥିଲା । କୋଇଲା ଶ୍ରମିକମାନଙ୍କର ଚାପ ଏତେ ପ୍ରବଳ ଥିଲା ଯେ ଭୁବନେଶ୍ୱର ମିଟିଂରେ ହିଁ ପରବର୍ତ୍ତି ବୈଠକରେ ରାଜିନାମା ଚୁଡାନ୍ତ କରିବାର ପ୍ରତିଶ୍ରୁତି ଦେଇ ହାଇଦ୍ରାବାଦ୍ ଠାରେ ଜାନୁୟାରୀ ୩ ରୁ ୫, ୨୦୦୯ରେ ବୈଠକ ଧାର୍ଯ୍ୟ କରାଯାଇଥିଲା । ହାଇଦ୍ରାବାଦ୍



Digitized by srujanika@gmail.com

ମିଟିଂରେ ଜେ.ବି.ସି.ସି.ଆଇ, ସମସ୍ତ ସ୍ତରରେ ମୋଟ ବେତନର ୨୪% ସର୍ବନିମ୍ନ ଗ୍ୟାରେଣ୍ଟେଡ୍ ବେନିଫିଟ୍ ଦେବାକୁ ନିଷ୍ପତ୍ତି କରିଥିଲା । ସର୍ବନିମ୍ନ ମୂଳ ବେତନର ୮୩୬୦ ଟଙ୍କା ଏବଂ ସିଲିଂ ବ୍ୟତୀତ ୧୨.୫% ଅଣ୍ଡର ଗ୍ରାଉଣ୍ଡ ଭତ୍ତା ମୂଳ ବେତନ ସହ ମିଳିଲା । ଏହି ବୈଠକରେ ୨୬ ଜାନୁୟାରୀ ୨୦୦୯ ପୂର୍ବରୁ ବେତନ ରାଜିନାମା ଚୁଡାନ୍ତ କରିବାକୁ ନିଷ୍ପତ୍ତି ହୋଇଥିଲା ।

ଦେଶର ପ୍ରଥମ ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଭାବରେ କୋଇଲା ଶିଳ୍ପରେ ଏକ ସଫଳ ବେତନ ଚୁକ୍ତିନାମା ସ୍ୱାକ୍ଷରିତ ହୋଇପାରିଛି । କୋଇଲା ଶ୍ରମିକମାନଙ୍କ ୮ମ ବେତନ ଚୁକ୍ତିନାମା କେବଳ କୋଇଲା ଶ୍ରମିକମାନଙ୍କ ପାଇଁ ସ୍ୱତନ୍ତ୍ର ଗୁରୁତ୍ୱ ବହନ କରେ ନାହିଁ । ସାମଗ୍ରୀକ ଭାବେ ସମସ୍ତ ରାଷ୍ଟ୍ରାୟତ୍ତ ଉଦ୍ୟୋଗର ବେତନ ଆଲୋଚନା ପାଇଁ ଏହି ଚୁକ୍ତିନାମା ଖୁବ୍ ପ୍ରଭାବଶାଳୀ ହେବା ଅବଧାରିତ ଅଟେ । ବିଭିନ୍ନ ରାଷ୍ଟ୍ରାୟତ୍ତ ଉଦ୍ୟୋଗର ଶ୍ରମିକମାନେ କୋଇଲା ଶ୍ରମିକମାନଙ୍କର ଏହି ବିଜୟକୁ ସମ୍ମାନ ପୂର୍ବକ ଗ୍ରହଣ କରୁଛନ୍ତି । ପାଞ୍ଚବର୍ଷ ପାଇଁ ହୋଇଥିବା ଏହି ଚୁକ୍ତିନାମା ଫଳରେ କୋଇଲା ଶ୍ରମିକମାନଙ୍କର ସର୍ବନିମ୍ନ ୨୪% ଗ୍ୟାରେଣ୍ଟେଡ଼ ବେନିଫିଟ୍ ମିଳିବା ସହିତ ୧୦ବର୍ଷିଆ ଚୁକ୍ତିନାମାର ପ୍ରବକ୍ତା ଓ ଚାଟୁକାରମାନେ ଶ୍ରମିକମାନଙ୍କ ମିଳିତ ଆନ୍ଦୋଳନ ସାମନାରେ ପରାସ୍ତ ହୋଇଛନ୍ତି ଏବଂ ଏହି ବିଜୟ ଐତିହାସିକ ବିଜୟ ହୋଇପାରିଛି ।

## ୮ମ ଚୁକ୍ତିନାମାର ବିଶେଷତ୍ୱ

୧. ରାଷ୍ଟ୍ରାୟତ୍ତ ଉଦ୍ୟୋଗରେ ପ୍ରଚଳିତ ପର୍ଯ୍ୟାୟର ସମସ୍ତ ମଜୁରୀ ଆଲୋଚନା ମଧ୍ୟରେ କୋଇଲା ଶ୍ରମିକଙ୍କ ବେତନ ଚୁକ୍ତିନାମା ହେଉଛି ପ୍ରଥମ । ଏହାକୁ ହାସଲ କରିବା ଏତେ ସହଜ ନଥିଲା । ଜାନୁୟାରୀ ୫ରୁ ୭, ୨୦୦୯, ୩ଦିନର ଦେଶବ୍ୟାପୀ ଧର୍ମଘଟର ଡ଼ାକରା ରାଷ୍ଟ୍ରାୟତ୍ତ ଉଦ୍ୟୋଗର କୋଇଲା ମ୍ୟାନେଜମେଣ୍ଟକୁ ଚୁକ୍ତିନାମା ପାଇଁ ବାଧ କରିଥିଲା । ଏକ ମାସରୁ କମ୍ ସମୟର ଫଳପ୍ରସୁ ଆଲୋଚନା ପରେ ସମସ୍ତ ବିଷୟ ନିଷ୍ପତ୍ତି ହୋଇ ଚୁକ୍ତିନାମା ସ୍ୱାକ୍ଷରୀତ ହୋଇପାରିଛି ।

୨. ଏହି ଚୁକ୍ତିନାମା ୫ବର୍ଷ ପାଇଁ ସ୍ୱାକ୍ଷରିତ ହୋଇଛି । ଯେତେବେଳେ କି ଅନେକ ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଚୁକ୍ତିନାମାର କାର୍ଯ୍ୟକାଳ ନେଇ ଆଲୋଚନାରେ ଏବେ ସୁଦ୍ଧା ବୁଡ଼ି ରହିଛନ୍ତି । କୌଣସି ଅନ୍ୟ ମନ୍ତ୍ରଣାଳୟ ବର୍ତ୍ତମାନ ପର୍ଯ୍ୟନ୍ତ ୫ବର୍ଷିଆ



Digitized by srujanika@gmail.com

ଚୁକ୍ତିନାମା ପାଇଁ ସମ୍ମତି ପ୍ରଦାନ କରିନାହାନ୍ତି । କୋଇଲା ଶିଳ୍ପର ଗୁରୁତ୍ୱ ଦୃଷ୍ଟିରୁ, କୋଇଲା ମ୍ୟାନେଜମେଣ୍ଟ ଓ କୋଇଲା ମନ୍ତ୍ରଣାଳୟକୁ ଟ୍ରେଡ୍ ୟୁନିୟନମାନଙ୍କ ପ୍ରସ୍ତାବକୁ ଗ୍ରହଣ କରିବାକୁ ପଡ଼ିଥିଲା ।

୩. ପୁନଶ୍ଚ ବେତନର ୨୪% ସର୍ବନିମ୍ନ ଗ୍ୟାରେଣ୍ଟେଡ୍ ବେନିଫିଟ୍ ସହ କୋଇଲା ଶିଳ୍ପରେ ଏକ ପାଞ୍ଚବର୍ଷିଆ ଚୁକ୍ତିନାମା ସର୍ବୋଚ୍ଚ ସଫଳତା ଅଟେ । ସମସ୍ତ କ୍ୟାଟେଗୋରିର ଶ୍ରମିକମାନଙ୍କର ଏହି ହାରରେ ମଜୁରୀ ବୃଦ୍ଧି ସମ୍ଭବପର ହୋଇଛି । ଶ୍ରମିକମାନଙ୍କ ମଧ୍ୟରେ ମଜୁରୀର ତାରତମ୍ୟକୁ ଯୁକ୍ତି ସମ୍ମତ ଢ଼ଂଗରେ ସ୍ଥିର କରାଯାଇଛି । ଏଥିଯୋଗୁଁ ସର୍ବନିମ୍ନ ମଜୁରୀ ସ୍ତରରେ ଶ୍ରମିକମାନଙ୍କ ଲାଭ ୧୮୮୫ ଟଙ୍କା ହୋଇଥିଲା ବେଳେ ସର୍ବୋଚ୍ଚ ସ୍ତରରେ ଏହା ୫୦୦୦ ଟଙ୍କା ରୁ ଅଧିକ ହୋଇପାରିଛି ।

୪. ଚୁକ୍ତି ଫଳରେ କୋଇଲା ଶିଳ୍ପରେ ୧ ଜୁଲାଇ ୨୦୦୬ ଠାରୁ ସର୍ବନିମ୍ନ ମୂଳ ବେତନ ୯୩୪୬ ଟଙ୍କାରେ ପହଞ୍ଚି ପାରିଛି । ଯାହାକି କୌଣସି ରାଷ୍ଟ୍ରାୟତ୍ତ ଉଦ୍ୟୋଗ ପାଇଁ ସର୍ବୋଚ୍ଚ ବେତନ ସୀମା ଅଟେ । କୋଇଲା ଖଣି ଭଳି ବିପଦଜନକ ଶିଳ୍ପ ପରିପ୍ରେକ୍ଷୀରେ ଏଭଳି ବେତନ ବୃଦ୍ଧି ସଂପୂର୍ଣ୍ଣ ଯୁକ୍ତିସଂଗତ ଅଟେ ।

୫. ପୂର୍ବରୁ କୋଇଲା ଶ୍ରମିକମାନେ ମୂଳ ବେତନର ୨୦ଭାଗ ଅଣ୍ଡରଗ୍ରାଉଣ୍ଡ ଭତ୍ତା ପାଉଥିଲେ । ଯାହା ହେଉ କେତେକ ପରବର୍ତ୍ତି ଚୁକ୍ତିନାମାରେ ମୂଳ ବେତନରୁ କିଛି ଟଙ୍କା ବାଦ ଦେଇ ଏହା ୨୦ ଭାଗ ଦିଆଯାଉଥିଲା । ପ୍ରକୃତରେ ଏହା ଅଣ୍ଡରଗ୍ରାଉଣ୍ଡ ଭତ୍ତାର ହାରକୁ କମ୍ କରୁଥିଲା । ସପ୍ତମ ମଜୁରୀ ଚୁକ୍ତିନାମାରେ ସିଲିଂ ସହିତ ୧୦ ଏବଂ ୧୨% ହାରରେ ଅଣ୍ଡରଗ୍ରାଉଣ୍ଡ ଭତ୍ତା ଦେବାକୁ ନିଷ୍ପତ୍ତି ହୋଇଥିଲା । କିନ୍ତୁ ୮ମ ଚୁକ୍ତିନାମାରେ କୌଣସି ସିଲିଂ ବ୍ୟତୀତ ୧୨.୫ ପ୍ରତିଶତ ଅଣ୍ଡର ଗ୍ରାଉଣ୍ଡ ଭତ୍ତା ମିଳିପାରିଛି । ଗତ ଚୁକ୍ତିନାମା ତୁଳନାରେ ଏହା ଅଧିକ ହେଲେ ମଧ୍ୟ ଭବିଷ୍ୟତରେ ଅଣ୍ଡର ଗ୍ରାଉଣ୍ଡରେ କାମ କରିବାର ବିପଦକୁ ଦୃଷ୍ଟିରେ ରଖି ଭତ୍ତା ବୃଦ୍ଧି କରିବା ପାଇଁ ଚେଷ୍ଟା କରିବାକୁ ପଡ଼ିବ । କୋଇଲା ଶିଳ୍ପରେ କେତେକ ଅଫିସର ଯେଉଁମାନେ କି ଅଣ୍ଡରଗ୍ରାଉଣ୍ଡରେ କାମ କରିବା କଥା, ସେମାନେ ଅଣ୍ଡରଗ୍ରାଉଣ୍ଡକୁ ନଯାଇ



Digitized by srujanika@gmail.com

ମଧ ଭତ୍ତା ଦାବି କରୁଛନ୍ତି । ଏପରି ସୁବିଧା ପ୍ରଦାନ ବନ୍ଦ ହେବା ଦରକାର । ଏପରିକି ଜଷ୍ଟିସ୍ ରାଓ କମିଟି ସୁପାରିଶ କରିଛନ୍ତି ଯେ, ଅଫିସରମାନେ ପ୍ରକୃତରେ ଯେତେଦିନ ଅଣ୍ଡରଗ୍ରାଉଣ୍ଡକୁ ଯାଉଛନ୍ତି ଏବଂ କାର୍ଯ୍ୟ କରୁଛନ୍ତି, ସେତିକି ଦିନ ପାଇଁ ଭତ୍ତା ଦାବି କରିବା ଉଚିତ୍ ।

୬. ୮ମ ଚୁକ୍ତିନାମାରେ ବାର୍ଷୀକ ଇନକ୍ରିମେଣ୍ଟ ମୂଳ ବେତନର ୩ ଭାଗ ପରିବର୍ଦ୍ଧିତ ହାରରେ ମିଳିବ । ଅର୍ଥାତ୍ ମୂଳବେତନର ବୃଦ୍ଧି ଏବଂ ବାର୍ଷୀକ ଇନ୍‌କ୍ରିମେଣ୍ଟ ମିଶି ଚୁକ୍ତିନାମା ଆରମ୍ଭ ବେଳେ ମୂଳ ବେତନ ଯାହାଥିଲା, ତା ଠାରୁ ବାର୍ଷିକ ଇନକ୍ରିମେଣ୍ଟ ୩ ଭାଗରୁ ଅଧିକ ହେବ । ଏହା ଦରମା ଅନୁପାତର ଚରିତ୍ରକୁ ବଦଳାଇ ଦେବ । କେତେକ ୟୁନିୟନ ଏହି ନୂଆ ପଦ୍ଧତିରେ ଫିଟମେଣ୍ଟ ବେନିଫିଟ୍ ମିଳିବ ନାହିଁ ବୋଲି ଆଶଙ୍କା ପ୍ରକାଶ କରିଥିଲେ । କିନ୍ତୁ ଚୁକ୍ତିନାମାର କାର୍ଯ୍ୟକାଳ ମଧ୍ୟରେ ମଜୁରୀ ବୃଦ୍ଧି ହାର ଫିଟମେଣ୍ଟ ବେନିଫିଟ୍ ଠାରୁ ବହୁ ଅଧିକ ହେବ । ନୂଆ ପଦ୍ଧତିରେ ଜଣେ ଶ୍ରମିକକୁ ତାର କାର୍ଯ୍ୟକାଳ ମଧ୍ୟରେ ସ୍ଥାୟୀ ବେନିଫିଟ୍ ମିଳିପାରିବ, କୋଇଲା ଶିଳ୍ପ ପାଇଁ ଏହା ଗୋଟିଏ ସ୍ୱାଗତଯୋଗ୍ୟ ପଦକ୍ଷେପ ।

୭. ଅଷ୍ଟମ ଚୁକ୍ତିନାମାରେ ସମସ୍ତ ଭତ୍ତା ୫୦ଭାଗ ବୃଦ୍ଧି ପାଇଛି । ଏହି ଭତ୍ତା ବୃଦ୍ଧି ୦୧.୦୧.୨୦୦୯ ରୁ କାର୍ଯ୍ୟକାରୀ ହେବ ।

୮. ବରିଷ୍ଠ ଶ୍ରମିକଙ୍କୁ କିଛି ରିହାତି ଦେବାପାଇଁ ଚୁକ୍ତିନାମାରେ ଜଣେ ଶ୍ରମିକ ଗୋଟିଏ ଅତିରିକ୍ତ ଇନ୍‌କ୍ରିମେଣ୍ଟ ପାଇ ପାରିବେ ଯାହା ଅବସରକାଳୀନ ପ୍ରାପ୍ୟ ବେଳେ ହିସାବକୁ ନିଆଯିବ । ଏହି ବିଶେଷ ସୁବିଧା ପ୍ରଥମଥର ପାଇଁ ୮ମ ଚୁକ୍ତିନାମାରେ ପ୍ରଚଳନକୁ ଆସି ପାରିଛି ।

୯. ୭ମ ଚୁକ୍ତିନାମା ଭଳି ଏହି ନୂତନ ଚୁକ୍ତିନାମା ବି.ଏଫ୍.ଆଇ .ଆରକୁ ପଠାଯାଇଥିବା ଇ.ସି.ଏଲ୍ ଏବଂ ବି.ସି.ସି.ଏଲ୍ ସମେତ ସମସ୍ତ କୋଇଲା ଖଣି କ୍ଷେତ୍ରରେ କାର୍ଯ୍ୟରତ କୋଇଲା ଶ୍ରମିକଙ୍କ ପାଇଁ କାର୍ଯ୍ୟକାରୀ ହେବ । ଡ଼ି.ପି.ଇ ର ପରାମର୍ଶ ଅନୁସାରେ ରଗ୍‌ଣ ଶିଳ୍ପର ଶ୍ରମିକ ବେତନ ବୃଦ୍ଧିର କୌଣସି ସୁବିଧା ପାଇବା କଥା ନୁହେଁ । ଏପରି ନିର୍ଦ୍ଦିଷ୍ଟ ପରାମର୍ଶ କୋଇଲା



Digitized by srujanika@gmail.com

ଶ୍ରମିକମାନଙ୍କ ଦ୍ୱାରା ୮ମ ଚୁକ୍ତିନାମାରେ ପ୍ରତ୍ୟାଖ୍ୟାତ ହୋଇଛି ।

୧୦. କୋଇଲା ଶିଳ୍ପରେ ଠିକାଦାରୀକରଣ ବୃଦ୍ଧି ସହିତ କମ୍ ମଜୁରୀ ଦେଇ କୋଇଲା ମ୍ୟାନେଜମେଣ୍ଟ ଠିକା ଶ୍ରମିକମାନଙ୍କୁ ଶୋଷଣ କରୁଛନ୍ତି । ଏକ ତୃତୀୟାଂଶରୁ ବେଶୀ କୋଇଲା ଠିକା ଶ୍ରମିକମାନଙ୍କ ଦ୍ୱାରା ଉତ୍ପାଦିତ ହେଉଛି । ଠିକା ଶ୍ରମିକମାନଙ୍କୁ କ୍ୟାଟେଗୋରୀରେ ସ୍ଥାୟୀ ଶ୍ରମିକମାନେ ପାଉଥିବା ସର୍ବନିମ୍ନ ମଜୁରୀ ହାର ଦେବାପାଇଁ ଟ୍ରେଡ୍ ୟୁନିୟନମାନେ ଦାବି କରିଛନ୍ତି । କୋଇଲା ବେତନ ଚୁକ୍ତିନାମାର ଇତିହାସରେ ପ୍ରଥମ ଥର ପାଇଁ ୮ମ ଚୁକ୍ତିନାମାର ଆଲୋଚନା ବେଳେ ଠିକା ଶ୍ରମିକମାନଙ୍କର ମଜୁରୀ ପ୍ରଶ୍ନକୁ ଏକ ଯୁଗ୍ମ କମିଟିରେ ବିଚାର କରିବା ପାଇଁ ମ୍ୟାନେଜମେଣ୍ଟ ରାଜି ହୋଇଛି । ଯାହା ଫଳରେ ଏହି କ୍ଷେତ୍ରରେ ଗତିରୋଧ ଦୂର ହୋଇପାରିଛି । ପରିତାପର ବିଷୟ ଚୁଡ଼ାନ୍ତ ଚିଠା ଚୁକ୍ତିନାମାରେ ଏହି ପ୍ରତିଶ୍ରୁତି ଉଲ୍ଲେଖ କରାଯାଇନାହିଁ । ଟ୍ରେଡ୍ ୟୁନିୟନମାନଙ୍କୁ ଏଥିପାଇଁ ମ୍ୟାନେଜମେଣ୍ଟ ଉପରେ ଚାପ ପକାଇବାକୁ ହେବ । ମିଳିତ ଟ୍ରେଡ୍ ୟୁନିୟନ ଆନ୍ଦୋଳନକୁ ୩ ଲକ୍ଷରୁ ଉର୍ଦ୍ଧ୍ୱ ଠିକା ଶ୍ରମିକମାନଙ୍କର କାର୍ଯ୍ୟ ପଦ୍ଧତି ଓ ଜୀବନ ଜୀବିକାର ଉନ୍ନତି ପାଇଁ ମିଳିତ ଆନ୍ଦୋଳନ ଓ ସଂଗ୍ରାମ୍ ସଂଗଠିତ କରିବାକୁ ପଡ଼ିବ୍ ।

୧୧. କୋଇଲା ଶିଳ୍ପରେ ପ୍ରଥମଥର ପାଇଁ ୮ମ ଚୁକ୍ତିନାମାରେ ଅଫିସରଙ୍କ ବେତନ ହାରଠାରୁ ଉଚ୍ଚ ବର୍ଗର ଶ୍ରମିକଙ୍କ ବେତନ ହାର ଅଧିକ ହୋଇଛି । ଅତି କୁଶଳୀ ଶ୍ରମିକ ଯିଏକି ଅତ୍ୟାଧୁନିକ ଯନ୍ତ୍ରପାତିରେ କାମ କରୁଛି, ନିମ୍ନ ଏକଜ୍ୟୁକୁଟିଭ ବେତନ ହାର ଠାରୁ ଅଧିକ ବେତନ ପାଇବା ପାଇଁ ଯୋଗ୍ୟ ହେବେ । ଏକଜ୍ୟୁକୁଟିଭ୍ ଏବଂ ଶ୍ରମିକମାନଙ୍କ ମଧ୍ୟରେ ବେତନର ଉଚିତ ଭାରସାମ୍ୟ-ରକ୍ଷା କରିବାର ଆବଶ୍ୟକତା ପ୍ରତି ୮ମ ଚୁକ୍ତିନାମା ଗୁରୁତ୍ୱ ଦେଇ ପାରିଛି ।

୧୨. ଷଷ୍ଠ ବେତନ କମିଶନ ସିଟି କଂପାନିସେଟୋରୀ ଆଲାଉନସ୍‌କୁ ବନ୍ଦ କରିଦେଇଥିଲା, ଯାହା କୋଇଲା ଶିଳ୍ପରେ ସହରରେ ରହୁଥିବା ଅଫିସ କର୍ମଚାରୀ ମାନଙ୍କୁ ପ୍ରଭାବିତ କଲା । ବର୍ତ୍ତମାନ ସହରରେ ରହୁଥିବା କର୍ମଚାରୀମାନେ ମାସକୁ ୬୫ରୁ ୩୦୦ଟଙ୍କା ଯାଏ ଭତ୍ତା ପାଉଛନ୍ତି । ଏହି



Digitized by srujanika@gmail.com

ଚୁକ୍ତିନାମାରେ ସିସିଏ ପରିବର୍ତ୍ତେ ପ୍ରତ୍ୟେକ କର୍ମଚାରୀକୁ ଗୋଟିଏ ଗ୍ୟାସ ସିଲିଣ୍ଡର ଦେବାକୁ ମ୍ୟାନେଜମେଣ୍ଟ ରାଜି ହୋଇଛି । ଯେଉଁ କର୍ମଚାରୀମାନେ ସି.ସି.ଏରେ ପ୍ରୋଭିଡେ଼ଣ୍ଟ ଫଣ୍ଡ ପାଉଥିଲେ ସେମାନଙ୍କ ପାଇଁ ଏହା କ୍ଷତିକର ହେଲେ ବି ପ୍ରତିମାସରେ ୧୪.୫ କେଜି ଗ୍ୟାସ ସିଲିଣ୍ଡର ପାଇପାରିବେ ।

୧୩. କୋଲ୍ ଇଣ୍ଡିଆ ଯେଉଁ ଶିକ୍ଷା ପ୍ରତିଷ୍ଠାନଙ୍କୁ କ୍ୟାମ୍ପସ ସିଲେକସନ୍ ପାଇଁ ଯାଇଥାଏ, ସେଠାରେ ଇଞ୍ଜିନିୟରିଂ ଓ ଡାକ୍ତରୀ ପଢୁଥିବା କୋଇଲା ଶ୍ରମିକମାନଙ୍କ ପିଲାମାନଙ୍କର ଟ୍ୟୁସନ୍ ଫି ଓ ହଷ୍ଟେଲ ଭଡ଼ା କୋଲ୍ ଇଣ୍ଡିଆ ଭରଣା କରିବ । ଏହା ୨୦୦୯ର ଶିକ୍ଷାବର୍ଷ ଠାରୁ କାର୍ଯ୍ୟକାରୀ କରାଯିବ ।

୧୪. ନର୍ସିଂ ଷ୍ଟାଫ୍‌ମାନେ ମାସିକ ୨୦୦ ଟଙ୍କା ନର୍ସିଂ ଭତ୍ତା ପାଇବେ । ଯାହାକି, କୋଇଲା ଶିଳ୍ପରେ ପ୍ରଥମ ଥର ପାଇଁ ଆରମ୍ଭ କରାଯାଇଛି । ଏହି ରାଶି ପର୍ଯ୍ୟାପ୍ତ ନହେଲେ ମଧ୍ୟ ଏହି ଭତ୍ତାର ପ୍ରଚଳନ ନର୍ସିଂ କର୍ମଚାରୀଙ୍କ ପାଇଁ ଗୁରୁତ୍ୱ ବହନ କରେ । ଭବିଷ୍ୟତ ବେତନ ଚୁକ୍ତିନାମାରେ ଏହି ପରିମାଣର ଭତ୍ତା ସେମାନଙ୍କ ପାଇଁ ବୃଦ୍ଧି କରାଯାଇ ପାରିବ ।

୧୫. ଗ୍ରାଚୁଇଟି ସିଲିଂ ୩.୫୦ଲକ୍ଷରୁ ୧୦ ଲକ୍ଷକୁ ବୃଦ୍ଧି କରାଯାଇଛି । ଏଥିପାଇଁ ପାର୍ଲିଆମେଣ୍ଟରେ ଆଇନ୍ ଅଣାଯାଇ ନାହିଁ । ଏହା ୦୧.୦୧.୨୦୦୭ ରୁ କାର୍ଯ୍ୟକାରୀ କରାଯିବ ।

୧୬. ସାଙ୍ଘାତିକ ଖଣି ଦୁର୍ଘଟଣା ପାଇଁ ମୃତ ଶ୍ରମିକ/ଶ୍ରମିକମାନଙ୍କର ହିତାଧିକାରୀ ୱାର୍କମେନ୍ କଂପେନସେସନ୍ ଆକ୍ଟ ର ପ୍ରାପ୍ୟ ବ୍ୟତୀତ ୫ ଲକ୍ଷ ଟଙ୍କା ଏହି ରାଜିନାମା ଅନୁସାରେ ପାଇବେ ।

୧୭. ଚାକିରୀରେ ଥାଇ ଶ୍ରମିକର ମୃତ୍ୟୁ ଘଟିଲେ ବର୍ତ୍ତମାନର ୩୦୦୦ ଟଙ୍କା ଆର୍ଥିକ କ୍ଷତିପୂରଣ ଚୁକ୍ତି ଅନୁସାରେ ୬୦୦୦ ଟଙ୍କାକୁ ବୃଦ୍ଧି କରାଯାଇଛି । ଏହା ୦୧.୦୫.୨୦୦୮ ରୁ କାର୍ଯ୍ୟକାରୀ କରାଯିବ ।

୧୮. ଗୁରୁତର ଖଣି ଦୁର୍ଘଟଣାରେ କୌଣସି କର୍ମଚାରୀ ମୃତ୍ୟୁବରଣ କଲେ ତାଙ୍କର ନିକଟ ଆତ୍ମୀୟଙ୍କୁ ୱାର୍କମେନ କଂପେନସେସନ୍ ଆଇନ୍‌ମତେ କ୍ଷତିପୂରଣ ବ୍ୟତୀତ ୫ଲକ୍ଷ ଟଙ୍କା ଦିଆଯିବ ।



Digitized by srujanika@gmail.com

୧୯. ୩୦ବର୍ଷର ଚାକିରୀକାଳ ମଧ୍ୟରେ ୪ଟି ପଦୋନ୍ନତି ପାଇଁ ମଂଜୁରୀ, ବାର୍ଷୀକ ଇନ୍‌କ୍ରିମେଣ୍ଟର ତାରିଖ, ପଦୋନ୍ନତିରେ ଇନ୍‌କ୍ରିମେଣ୍ଟ ବେନିଫିଟ୍ ଆଦି ୩ଟି ବିଷୟ ଆଲୋଚନା କାଳରେ ନିଷ୍ପତ୍ତି ହୋଇପାରି ନଥିବାରୁ, ଏସବୁର ବିଚାର ପାଇଁ ଏକ ସବ୍‌କମିଟି ଗଠନ କରିଛନ୍ତି । ଏହି ବିଷୟ ଗୁଡ଼ିକ ଉପରେ ଟ୍ରେଡ୍ ୟୁନିୟନମାନେ ଯଥା ଶୀଘ୍ର ସିଦ୍ଧାନ୍ତରେ ପହଞ୍ଚିବା ଦରକାର ।

ଚୁକ୍ତିନାମାଟିକୁ କୋଇଲାଖଣି ଶ୍ରମିକମାନେ ପ୍ରତି କ୍ଷେତ୍ରରେ ସ୍ୱାଗତ କରିଛନ୍ତି । ଏକତା ଓ ସଂଗ୍ରାମ ବଳରେ ଶ୍ରମିକମାନେ ଦାବି ଆଦାୟ କରିପାରିବାର ଆତ୍ମ ପ୍ରତ୍ୟୟ ସୃଷ୍ଟି ହୋଇପାରିଛି । ଜେ.ବି.ସି.ସି.ଆଇର ୭ଟି ବୈଠକ ସତ୍ତ୍ୱେ ଆଲୋଚନା ବେଶି ବାଟ ଅଗ୍ରଗତି କରି ନଥିବା ବେଳେ, ୩ଦିନର ମିଳିତ ଧର୍ମଘଟର ଡ଼ାକରା ଫଳରେ ଆଲୋଚନା ଗୋଟିଏ ମାସ ମଧ୍ୟରେ ଚୂଡ଼ାନ୍ତ ହୋଇଥିଲା ଏବଂ ମନ୍ତ୍ରଣାଳୟରୁ ଏଥିପାଇଁ ମଞ୍ଜୁରୀ ମଧ୍ୟ ମିଳିପାରିଥିଲା ।

କୋଇଲା ଶ୍ରମିକମାନଙ୍କ ସଫଳତାରେ ୧୦ବର୍ଷିଆ ଚୁକ୍ତିନାମାର ପ୍ରବକ୍ତାମାନେ ଶୋଚନୀୟ ଭାବେ ପରାଜିତ ହୋଇଛନ୍ତି । ଆଜି ସେମାନେ ଦେଶ ସାରା କୋଇଲା ଶ୍ରମିକମାନଙ୍କ ପାଖରେ ଉପହାସର ପାତ୍ର । କୋଇଲା ମ୍ୟାନେଜମେଣ୍ଟର ଗୋଟିଏ ଅଂଶ ଏବଂ କେନ୍ଦ୍ର କୋଇଲା ମନ୍ତ୍ରଣାଳୟ ଯେଉଁମାନେ ଏମାନଙ୍କୁ ସମର୍ଥନ କରୁଥିଲେ, ସାରା ଦେଶର କୋଇଲା ଶ୍ରମିକମାନଙ୍କ ଠାରୁ ଶକ୍ତିଶାଳୀ ଧକ୍କା ଖାଇଲେ । ସି.ଆଇ.ଟି.ୟୁ ଏବଂ ଏ.ଆଇ.ସି.ଡବ୍ଲ୍ୟୁ.ଏଫ୍. ଧର୍ମଘଟ ପ୍ରସ୍ତୁତି ଏବଂ ଗୋଟିଏ ଉତ୍ତମ ଚୁକ୍ତିନାମା ହାସଲ କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିପାରିଛି । ଏଥିସହ ୫ଟି ଫେଡ଼େରେସନ୍‌ର ମିଳିତ ଆଭିମୁଖ୍ୟ ଏଭଳି ରାଜିନାମା ଚୂଡ଼ାନ୍ତ ପାଇଁ ସାହାଯ୍ୟକାରୀ ହୋଇଛି ।

ଟ୍ରେଡ଼ ୟୁନିୟନମାନଙ୍କ ପ୍ରବଳ ଚାପ ସତ୍ତ୍ୱେ କୋଇଲା ଶ୍ରମିକମାନଙ୍କ ପାଇଁ କୋଲ୍‌ଫିଲ୍ଡସ୍ ଭତ୍ତା ଏଥର ହାସଲ କରାଯାଇ ପାରିଲା ନାହିଁ । କୋଇଲା ଶିଳ୍ପରେ ଅଫିସରମାନେ କୋଲ୍‌ଫିଲ୍ଡସ୍ ଭତ୍ତା ପାଉଥିବାରୁ ମ୍ୟାନେଜମେଣ୍ଟ ପକ୍ଷରୁ ଏହାକୁ ପ୍ରତ୍ୟାହାର କରାଯିବାକୁ ଚେୟାରମ୍ୟାନ ଘୋଷଣା କଲେ । କିନ୍ତୁ ମ୍ୟାନେଜମେଣ୍ଟ ଏହି ବେନିଫିଟ୍ ଅନ୍ୟ ଆକାରରେ ଦେଇପାରନ୍ତି । ଅବସରପ୍ରାପ୍ତ ଶ୍ରମିକମାନଙ୍କର ଚିକିତ୍ସା ସୁବିଧା ପାଇଁ ମ୍ୟାନେଜମେଣ୍ଟ ରାଜି ହୋଇଥିଲେ ମଧ୍ୟ ଏସଂପର୍କରେ ନିର୍ଦ୍ଦିଷ୍ଟ



Digitized by srujanika@gmail.com

ସ୍କିମ୍ ତିଆରି ହୋଇନାହିଁ । ଘରୋଇ ବୀମା କଂପାନୀମାନଙ୍କ ଦ୍ୱାରା ମେଡ଼ିକ୍ଲେମ୍ ସ୍କିମ୍‌ର ଦୁଃଖଦାୟକ ଅନୁଭୂତିକୁ ବିଚାରକୁ ନେଇ ଏହି ସ୍କିମକୁ ତିଆରି କରିବାକୁ ପଡ଼ିବ । ପ୍ରଚଳିତ ପେନସନ୍ ସ୍କିମ୍ ବାବଦରେ ଶ୍ରମିକମାନଙ୍କ ମଧ୍ୟରେ ପ୍ରବଳ ଅସନ୍ତୋଷ ରହିଛି । ଶ୍ରମିକମାନେ ଏହି ସ୍କିମର ଉନ୍ନତି ଏବଂ ପେନସନ୍ ସୁବିଧାର ବୃଦ୍ଧି ଚାହାଁନ୍ତି । ଏହା ଫଳରେ କେବଳ ସେମାନଙ୍କର ଅବସରକାଳୀନ ଜୀବନ ସୁରକ୍ଷିତ ରହିପାରିବ ।

## ପରବର୍ତ୍ତୀ ପଦକ୍ଷେପ କ'ଣ ?

ଏପରି ଏକ ଉତ୍ତମ ରାଜିନାମା ସମ୍ଭବପର ହେବାପରେ, ଶ୍ରମିକମାନଙ୍କୁ ଏଇ କ୍ଷେତ୍ରରେ ଶିଳ୍ପର ଅବସ୍ଥା ଆଡ଼େ ମଧ୍ୟ ଧ୍ୟାନ ଦେବା ଦରକାର । ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଶ୍ରମିକମାନଙ୍କୁ ଉତ୍ତମ ବେତନ ଦେଉଥିଲା ବେଳେ କୋଇଲା ଶିଳ୍ପର ଘରୋଇ ଉଦ୍ୟୋଗ ଅତି କମ୍ ମଜୁରୀ ଦେଉଛନ୍ତି । ଏପରିକି ଅନେକ ରାଜ୍ୟ ସରକାର ଧାର୍ଯ୍ୟ କରିଥିବା ସର୍ବନିମ୍ନ ମଜୁରୀ ଠାରୁ ମଧ୍ୟ କମ୍ । କୋଇଲା ଶ୍ରମିକମାନଙ୍କର ୮ମ ବେତନ ଚୁକ୍ତିନାମା ସମସ୍ତ କୋଇଲା ଶିଳ୍ପ ପାଇଁ କାର୍ଯ୍ୟକାରୀ କରିବାର ଦାବି ସରକାର ଗ୍ରହଣ କରିନାହାନ୍ତି । ଏଥିପାଇଁ ଦାବି କରିବାକୁ ହେବ ।

ଘରୋଇ କ୍ଷେତ୍ରର କୋଇଲା ଖଣି ଗୁଡ଼ିକରେ ଟ୍ରେଡ଼ ୟୁନିୟନ ଆନ୍ଦୋଳନ ଖୁବ ଦୁର୍ବଳ । ମାଲିକମାନେ ସେମାନଙ୍କ ଖଣିରେ ୟୁନିୟନ ଗଠନ କରିବାକୁ ଦେଉନାହାନ୍ତି । ୫ଟି ଫେଡ଼େରେସନ୍ ଏହି ଦିଗ ପ୍ରତି ଅଧିକ ଧ୍ୟାନ ଦେବା ଦରକାର । ଘରୋଇ କ୍ଷେତ୍ରର କୋଇଲା ଖଣିରେ ଟ୍ରେଡ଼ ୟୁନିୟନ ଗଠନ ପାଇଁ ଅଧିକ ଧ୍ୟାନ ଦେଇପାରିଲେ ହିଁ ଅଗ୍ରଗତି ହାସଲ କରାଯାଇ ପାରିବ । ଘରୋଇ କ୍ଷେତ୍ରର କୋଇଲା ଖଣି ଶ୍ରମିକ ମାନଙ୍କର ଫଳପ୍ରଦ ଆନ୍ଦୋଳନ ବିନା ସେମାନଙ୍କର ଜୀବନ ଜୀବିକାର ଉନ୍ନତି ବିଧାନ ହୋଇ ପାରିବ ନାହିଁ । ପୂର୍ବରୁ ବର୍ଣ୍ଣନା କରାଯାଇଛି ଯେ, ରାଷ୍ଟ୍ରାୟତ୍ତ ଉଦ୍ୟୋଗର କୋଇଲା ଖଣିରେ ଠିକା ଶ୍ରମିକମାନଙ୍କ ସଂଖ୍ୟା ଦ୍ରୁତ ବେଗରେ ବଢ଼ିଚାଲିଛି ଏବଂ ସେମାନେ ବହୁତ କମ୍ ମଜୁରୀ ପାଉଛନ୍ତି । ରାଷ୍ଟ୍ରାୟତ୍ତ ଉଦ୍ୟୋଗ କୋଇଲା ଖଣିର ଠିକା ଶ୍ରମିକମାନଙ୍କ ମଧ୍ୟରେ ଟ୍ରେଡ଼ ୟୁନିୟନ ଆନ୍ଦୋଳନ ଶକ୍ତିଶାଳୀ ହେବା ନିହାତି ଜରୁରୀ ।



Digitized by srujanika@gmail.com

# ବ୍ୟାପକ ଠିକାଦାରୀକରଣ

କୋଲ୍ ଇଣ୍ଡିଆ ମ୍ୟାନେଜମେଣ୍ଟ ଅଧିକରୁ ଅଧିକ ଠିକା ଶ୍ରମିକମାନଙ୍କୁ ନିଯୁକ୍ତି ଦେବା ଉପାୟ ଅବଲମ୍ବନ କରି ସ୍ଥାୟୀ କର୍ମଚାରୀଙ୍କ ସଂଖ୍ୟା କମାଇବାରେ ବ୍ୟସ୍ତ । ମ୍ୟାନେଜମେଣ୍ଟ ପକ୍ଷରୁ ବଳକା ଶ୍ରମିକ ଥିବା ଦାବି କରୁଥିବା ବେଳେ କେତେ କମ୍ ମଜୁରୀ ଦେଇ ଠିକା ଶ୍ରମିକ ନିଯୁକ୍ତି କରିହେବ, ସେଥିପାଇଁ କୌଶଳ ଖୋଜୁଛନ୍ତି । ମହାନଦୀ କୋଲ୍ ଫିଲଡ୍ସରେ ଅଧିକ ସଂଖ୍ୟକ ଶ୍ରମିକ ଠିକାଦାର ଅଧୀନରେ କାମ କରୁଥିବା ବେଳେ, ଅନ୍ୟ କଂପାନୀରେ ଖୁବ୍ କମ୍ ସମୟ ମଧ୍ୟରେ ସ୍ଥାୟୀ ଶ୍ରମିକଙ୍କ ଠାରୁ ଠିକା ଶ୍ରମିକମାନଙ୍କ ସଂଖ୍ୟା ଅଧିକ ହେବାକୁ ଯାଉଛି ।

ଏନ୍.ଡ଼ି.ଏ ସରକାର କୋଇଲା ଖଣିକୁ ଜାତୀୟକରଣରୁ ବଂଚିତ କରିବା ପାଇଁ ପାର୍ଲିଆମେଣ୍ଟରେ ଏକ ବିଲ୍ ଆଣିଥିଲେ । ପାଂଚଟି ଯାକ ଫେଡ଼େରେସନ୍‌ର ଅନିର୍ଦ୍ଦିଷ୍ଟକାଳୀନ ଧର୍ମଘଟ ଧମକ ଯୋଗୁ ଏହି ବିଲ୍ ପାଶ୍ ହୋଇ ପାରିନଥିଲା । ଏବେ କେନ୍ଦ୍ର ସରକାର ଘରୋଇକରଣ କରିବା ପାଇଁ ଗୋପନୀୟ ପଦକ୍ଷେପ ନେଉଛନ୍ତି । କ୍ୟାପଟିଭ୍ ଖଣି ନାଁରେ କେତେକ କୋଇଲା ବ୍ଲକକୁ ଘରୋଇ କଂପାନୀମାନଙ୍କ ହାତରେ ବିଜୁଳୀ ଉତ୍ପାଦନ ପାଇଁ ଟେକି ଦିଆ ଯାଇଛି, ଯେତେବେଳେ କି ସେମାନେ ବିଜୁଳୀ ଉତ୍ପାଦନ କରନ୍ତି ନାହିଁ ।

ପାର୍ଲିଆମେଣ୍ଟରେ ଆଗତ ତଥ୍ୟ ଅନୁଯାୟୀ ୫୬ ବିଲିଅନ୍ (୫୬୦୦କୋଟି) ଟନ୍ କୋଇଲା ଗଚ୍ଛିତ ଥିବା ୧୯୦ଟି କୋଲ୍ ବ୍ଲକ ଘରୋଇ କଂପାନୀମାନଙ୍କୁ ଦିଆଯାଇଛି । ଏମାନଙ୍କ ମଧ୍ୟରୁ ଅନେକ ଖଣିର ଉନ୍ନତି ପାଇଁ କୌଣସି ପଦକ୍ଷେପ ନେଇନାହାନ୍ତି । ଏଠାରେ ଉଲ୍ଲେଖ ଯୋଗ୍ୟ କି କୋଲ୍‌ଇଣ୍ଡିଆକୁ କୌଣସି ନୂତନ ବ୍ଲକ ଦିଆଯାଇନାହିଁ । ଏପରିକି ସେଲ୍, ଏନ୍.ଟି.ପି.ସି ଆଦି କେତେକ ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଏପରି ବ୍ଲକ ପାଇଁ ଆବେଦନ କରିଥିଲେ ବି ସରକାର ସେମାନଙ୍କୁ କୋଇଲା ବ୍ଲକ ଦେଇନାହାନ୍ତି । କେନ୍ଦ୍ର ସରକାର କୋଇଲା ଖଣିର ଘରୋଇକରଣକୁ ପ୍ରୋତ୍ସାହିତ କରୁଥିବା ଏହା ଫଳରେ ପ୍ରମାଣିତ ହୋଇଛି ।

କେନ୍ଦ୍ର ସରକାର ଦାବି କରୁଛନ୍ତି ଯେ, କୋଲ୍ ଇଣ୍ଡିଆ ଏକାକୀ କୋଇଲାର ସମସ୍ତ ଆବଶ୍ୟକତା ପୂରଣ କରିବାରେ ଅକ୍ଷମ । ଏହା ସମ୍ପୂର୍ଣ୍ଣ ଅସତ୍ୟ । କୋଇଲା



Digitized by srujanika@gmail.com

ଶିଳ୍ପର ଟ୍ରେଡ୍ ୟୁନିୟନମାନେ ବାରମ୍ବାର କହିଛନ୍ତି ଯେ ଦେଶର ଆବଶ୍ୟକତା ପୂରଣ ପାଇଁ କୋଇଲା ଉତ୍ପାଦନର କ୍ଷମତା କୋଲ୍‌ଇଣ୍ଡିଆର ରହିଛି । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ପୂର୍ବର ସମସ୍ତ ଯୋଜନାରେ ଶକ୍ତି ଉତ୍ପାଦନର ଧାର୍ଯ୍ୟ ଲକ୍ଷ୍ୟ କେବେବି ପୂରଣ ହୋଇନାହିଁ । ଯଥାର୍ଥ ଯୋଜନା କଲେ ଦେଶର ଶକ୍ତି ଉତ୍ପାଦନ ଲାଗି ପର୍ଯ୍ୟାପ୍ତ କୋଇଲା ଉତ୍ପାଦନ ପାଇଁ ରାଷ୍ଟ୍ରାୟତ୍ତ କୋଇଲା ଶିଳ୍ପର କାୟାବୃଦ୍ଧି କରାଯାଇପାରିବ ।

ଭାରତରେ କୋଇଲା ଖଣି କାମ ପାଇଁ ବହୁଜାତିକ କଂପାନୀମାନଙ୍କୁ ଅନୁମତି ଦେବା, କେନ୍ଦ୍ର ସରକାରଙ୍କ ନୀତି ଫଳରେ ବିଦେଶୀ ଖଣି କଂପାନୀମାନଙ୍କର ଲୋଲୁପ ଦୃଷ୍ଟି ଆମ ଦେଶର ଖଣି ଉପରେ ପଡ଼ିଛି । ସେମାନେ ଭାରତୀୟ ଶ୍ରମିକଙ୍କୁ ଶୋଷଣ କରି ଭାରତରୁ ମୁନାଫା ନେଇଯିବା ପାଇଁ ଆମ ଦେଶକୁ ଆସିବାକୁ ଇଚ୍ଛୁକ । କେନ୍ଦ୍ର ସରକାରଙ୍କ ଏହି ନୀତିକୁ କୋଇଲା ଶିଳ୍ପର ଟ୍ରେଡ୍ ୟୁନିୟନମାନେ ବିରୋଧ କରିଛନ୍ତି । ମୁନାଫାଖୋର ବିଦେଶୀ ଖଣି କଂପାନୀମାନଙ୍କୁ ଭାରତରେ କାର୍ଯ୍ୟ କରିବାକୁ ଅନୁମତି ନ ଦେବାପାଇଁ କୋଇଲା ଖଣି ଶ୍ରମିକ ମାନେ ଆନ୍ଦୋଳନ କରିବା ଦରକାର । ଜାତୀୟକରଣ ପୂର୍ବ ସମୟର ବିଦେଶୀ କୋଇଲା କଂପାନୀମାନଙ୍କର ଦୁଃଖଦ ଅନୁଭୂତିର ପୁନରାବୃତ୍ତି ଭାରତରେ ଆଉ ହେବାକୁ ଦିଆ ନଯାଉ ।

## କୋଲ୍ ଇଣ୍ଡିଆର ପୁଞ୍ଜି ପ୍ରତ୍ୟାହାର

କେନ୍ଦ୍ର ସରକାର କୋଲ୍‌ଇଣ୍ଡିଆର ସେୟାର ବିକ୍ରି କରିବାର ସର୍ତ୍ତ ରଖି କୋଲ୍ ଇଣ୍ଡିଆକୁ ନବରତ୍ନ କଂପାନୀର ମାନ୍ୟତା ପ୍ରଦାନ କରିଛନ୍ତି । ଟ୍ରେଡ୍ ୟୁନିୟନ ଆନ୍ଦୋଳନ କେବେବି ଏଭଳି ସର୍ତ୍ତକୁ ମାନିନେବ ନାହିଁ । ଏହା କୋଲ୍‌ଇଣ୍ଡିଆର ରାଷ୍ଟ୍ରାୟତ୍ତ ଉଦ୍ୟୋଗର ଚରିତ୍ରକୁ ନ୍ୟୁନ କରିଦେବ । କୋଇଲା ଶିଳ୍ପରେ ଏଭଳି ଅଭିପ୍ରାୟକୁ ପ୍ରଶୟ ନ ଦେବା ପାଇଁ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଗଢ଼ି ତୋଳିବା ଆବଶ୍ୟକ ।

## ବିଦେଶରୁ କୋଇଲା କାହିଁକି ?

ଭାରତରେ କୋଇଲା ଖଣିର ଉନ୍ନତି ପରିବର୍ତ୍ତେ କୋଲ୍ ଇଣ୍ଡିଆ ବିଦେଶରେ କୋଇଲା ଖଣି ଖୋଲିବା ପାଇଁ ଯୋଜନା କରୁଛି । ଏଥିପାଇଁ କୋଲ୍‌ଇଣ୍ଡିଆ ପକ୍ଷରୁ ଇଣ୍ଡୋନେସିଆ, ଅଷ୍ଟ୍ରେଲିଆ, ଦକ୍ଷିଣ ଆଫ୍ରିକା ଏବଂ ନାଇଜେରିଆ ଆଦି ଦେଶ



Digitized by srujanika@gmail.com

ସଂପର୍କରେ ବିବେଚନା କରାଯାଉଛି । ଭାରତରେ ନିଯୁକ୍ତି ସୁଯୋଗ ସୃଷ୍ଟି କରିବା ପରିବର୍ତ୍ତେ କୋଲ୍‌ଇଣ୍ଡିଆ ବିଦେଶରେ ନିଯୁକ୍ତି ସୁଯୋଗ ଖୋଜି ବୁଲୁଛି । ଅର୍ଥନୈତିକ ଭାବେ ଲାଭଦାୟକ ନହେବା ନାଁରେ ଖଣିରେ ଅନେକ ପରିମାଣରେ କୋଇଲା ଗଚ୍ଛିତ ଥିଲେ ମଧ୍ୟ ଭାରତରେ କୋଇଲା ଖଣିକୁ ବନ୍ଦ କରିଦିଆଯାଉଛି । କେତେକ ବିଦେଶୀ ଖଣି କଂପାନୀ ସହିତ ମିଳିତ ସହଯୋଗରେ ଭାରତରେ କେତେକ ବନ୍ଦ କୋଇଲା ଖଣି ପୁଣି ଖୋଲିବା ପାଇଁ କୋଲ୍‌ଇଣ୍ଡିଆ ଚେଷ୍ଟା କରୁଛି । ଏହା ମଧ୍ୟ କୋଇଲା ଶିଳ୍ପର ସ୍ୱାର୍ଥପାଇଁ ନୁହେଁ । କୋଲ୍‌ଇଣ୍ଡିଆ ଟ୍ରେଡ଼ ୟୁନିୟନମାନଙ୍କ ସହଯୋଗରେ ସଠିକ୍ ନୀତି ତିଆରି କରିପାରିଲେ କେତେକ ଖଣି ଲାଭଦାୟକ ହେବା ମଧ୍ୟ ସମ୍ଭବପର । ଏପରି ସମ୍ଭାବନା ପ୍ରତି କର୍ତ୍ତୃପକ୍ଷ ସଂପୂର୍ଣ୍ଣ ଉଦାସୀନ ।

କେନ୍ଦ୍ର ସରକାର ଭାରତୀୟ ଖଣି ଶିଳ୍ପର ଉନ୍ନତି ଏବଂ ଦେଶରେ ଅଧିକ ନିଯୁକ୍ତି ସୃଷ୍ଟି କରିବା ପରିବର୍ତ୍ତେ ବିଦେଶରୁ ଅଧିକରୁ ଅଧିକ କୋଇଲା ଆମଦାନୀ କରୁଛନ୍ତି । ଏହା ଭାରତରେ ବେକାରୀ ସଂଖ୍ୟା ବୃଦ୍ଧିରେ ସହାୟକ ହେଉଛି । କେନ୍ଦ୍ର ସରକାର ତାପଜ ବିଦ୍ୟୁତ କେନ୍ଦ୍ର ଗୁଡ଼ିକୁ ବାହାରୁ କୋଇଲା ଆମଦାନୀ କରିବାକୁ ଅନୁମତି ଦେଇଛନ୍ତି । ଏହା ଭାରତୀୟ କୋଇଲା ଖଣି ଶିଳ୍ପ ପାଇଁ ସମସ୍ୟାର କାରଣ ହୋଇଛି । କେନ୍ଦ୍ର ସରକାରଙ୍କ ଦ୍ୱାରା ଏଭଳି କ୍ଷତିକାରକ ନୀତି ଯେପରି ପ୍ରଚଳନ ନ ହୁଏ, ସେଥିପାଇଁ ମିଳିତ ଟ୍ରେଡ଼ ୟୁନିୟନ ଆନ୍ଦୋଳନକୁ ଯତ୍ନବାନ ହେବାକୁ ପଡ଼ିବ ।

## ସି.ଏମ୍.ପି.ଡ଼ି.ଆଇ.ଏଲ୍ ବଞ୍ଚାଅ

ସମୟକ୍ରମେ ସି.ଏମ୍.ପି.ଡ଼ି.ଆଇ.ଏଲ୍‌କୁ ଘରୋଇକରଣ କରିବା ଉଦ୍ଦେଶ୍ୟରେ କୋଇଲା ମନ୍ତ୍ରଣାଳୟ ପକ୍ଷରୁ କୋଲ୍‌ଇଣ୍ଡିଆରୁ ସି.ଏମ୍.ପି.ଡ଼ି.ଆଇ.ଏଲ୍‌କୁ ପୃଥକ କରିବା ପାଇଁ ବାରମ୍ବାର ଉଦ୍ୟମ କରାଯାଉଛି । ଏହା ସତ୍ୟ ଯେ କୋଇଲା ଶିଳ୍ପର ଉନ୍ନତି ପାଇଁ ସି.ଏମ୍.ପି.ଡ଼ି.ଆଇ.ଏଲ୍ ଖୁବ୍ ଦରକାରୀ କାର୍ଯ୍ୟ କରୁଛି ଏବଂ ଏହାର ଉନ୍ନତି କରିବା ଖୁବ୍ ଜରୁରୀ । ଯେଉଁ କର୍ମଚାରୀମାନେ ଡ୍ରିଲିଂ ସାଇଟ୍‌ରେ କାର୍ଯ୍ୟ କରୁଛନ୍ତି, ତୀବ୍ର ପ୍ରତିବନ୍ଧକର ସମ୍ମୁଖୀନ ହୋଇ ମଧ୍ୟ ପ୍ରତିବଦ୍ଧତାର ସହିତ କାର୍ଯ୍ୟ କରିଥାନ୍ତି । ସେମାନଙ୍କ କାର୍ଯ୍ୟ ଏବଂ ଜୀବନଧାରଣ ପଦ୍ଧତିରେ ଉନ୍ନତି ଆଣିବାକୁ ଟ୍ରେଡ଼ ୟୁନିୟନମାନେ ପ୍ରାଧାନ୍ୟ ଦେବା ଦରକାର । କୋଇଲା ଶିଳ୍ପକୁ ଆତ୍ମନିର୍ଭରଶୀଳ କରିବା



Digitized by srujanika@gmail.com

ପାଇଁ ସି.ଏମ୍.ପି.ଡ଼ି.ଆଇ.ଏଲ୍ ଟେକ୍ନିସିଆନ୍‌ମାନଙ୍କୁ ସୁଦକ୍ଷ କରି ଗଢ଼ି ତୋଳିଛି । ସେମାନେ ମଧ୍ୟ ଏହି କ୍ଷେତ୍ରରେ ବହୁ ସାହାଯ୍ୟକାରୀ ଭୂମିକା ଗ୍ରହଣ କରିଥାନ୍ତି । କିନ୍ତୁ ବିଦେଶୀ ଜ୍ଞାନ କୌଶଳ ଉପରେ ନିର୍ଭର କରିବାର କେନ୍ଦ୍ର ସରକାରଙ୍କ ନୀତି ଯୋଗୁ ସି.ଏମ୍.ପି.ଡ଼ି:ଆଇ.ଏଲ୍‌ର ଭିତ୍ତିଭୂମି ଶକ୍ତିଶାଳୀ କରିବା ପାଇଁ ଉପଯୁକ୍ତ ଧ୍ୟାନ ଦିଆଯାଉ ନାହିଁ ।

କୋଇଲା ଶିଳ୍ପର ଆବଶ୍ୟକତା ପୂରଣ ପାଇଁ ସମସ୍ତ ଯନ୍ତ୍ରପାତି, ଉପକରଣ ନିଶ୍ଚିତ ଭାବେ ଭାରତ ତିଆରି କରିପାରିବ । ମାଇନିଂ ଏଣ୍ଡ ଏଲାଏଡ୍ ମେସିନାରୀ କର୍ପୋରେସନ୍ (MAMC)କୁ କୋଲ୍ ଇଣ୍ଡିଆ ଅଧିଗ୍ରହଣ କରିବା ସ୍ୱାଗତଯୋଗ୍ୟ ପଦକ୍ଷେପ । ପ୍ରଶାସନିକ ବିବାଦ ଓ ସରକାରଙ୍କ ସହିତ ସଂପର୍କ ଥିବା ନ୍ୟସ୍ତ ସ୍ୱାର୍ଥଙ୍କ ଭୂମୀକା ଯୋଗୁ ଏହା ଅତ୍ୟଧିକ ବିଳମ୍ବ ହେଉଛି । ତେବେ ଟ୍ରେଡ୍ ୟୁନିୟନ ଆନ୍ଦୋଳନର କର୍ତ୍ତବ୍ୟ ହେଉଛି ସି.ଏମ୍.ପି.ଡ଼ି.ଆଇ.ଏଲ୍‌କୁ ଶକ୍ତିଶାଳୀ କରିବା ଏବଂ ଦେଶରେ ଖଣି ଉପକରଣ ତିଆରି ପାଇଁ ଦାବି କରିବା । ଏହି ସବୁ ସାମଗ୍ରୀ ଆମଦାନୀ କରିବାରେ ତୁରନ୍ତ ମିଳୁଥିବା କିକ୍‌ବ୍ୟାକ୍ ଦେଶୀୟ ଭିତ୍ତିଭୂମୀ ଉନ୍ନତି ପଥରେ ପ୍ରତିବନ୍ଧକ ହେଉଛି ।

## କୋଇଲା ଚୋରି

କୋଇଲା ଖଣି ଗୁଡ଼ିକରୁ କୋଇଲା ଚୋରି ଭାରତରେ କୋଇଲା ଶିଳ୍ପରେ ଏକ ନିତ୍ୟ ନୈମିତିକ ଘଟଣା । ଉତ୍ପାଦନର ରେକର୍ଡ଼କୁ ପରିବର୍ତ୍ତନ କରି ଖଣି ମ୍ୟାନେଜମେଣ୍ଟ ବେଆଇନ୍ ଭାବେ କୋଇଲା ବିକ୍ରି କରୁଛନ୍ତି, କିନ୍ତୁ ସେମାନଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ହେଉନାହିଁ । ମାଫିଆମାନେ ଖୋଲାଖୋଲି ଖଣି ମ୍ୟାନେଜମେଣ୍ଟ ସହିତ ସଲାସୁତୁରାରେ ଖଣି ପିଟ୍‌ରୁ କୋଇଲା ଚୋରି କରୁଛନ୍ତି ।

ବିଭିନ୍ନ ସମୟରେ ଘଟୁଥିବା ଦୁର୍ଘଟଣା କୋଇଲା ଶିଳ୍ପରେ ବ୍ୟାପକ ଭାବେ ବେଆଇନ୍ କୋଇଲା ଖଣି ଚାଲିଥିବାର ଘଟଣାକୁ ଉଜାଗର କରିଥାଏ । କୋଲ୍ ଇଣ୍ଡିଆର ଅଫିସର ଏବଂ ସ୍ଥାନୀୟ ପ୍ରଶାସନର ଜ୍ଞାତସାରରେ ଏଭଳି ଅଦ୍ଭୁତ ବ୍ୟାପାର ତିଷ୍ଠି ରହିଛି । ଏହି ପରି ବେଆଇନ୍ ଖଣି ଗୁଡ଼ିକରେ ଲକ୍ଷ ଲକ୍ଷ ଟନ୍ କୋଇଲା ଉତ୍ପାଦିତ ହେଉଥିଲା ବେଳେ ଏହି ଖଣିର ମାଲିକମାନଙ୍କ ଦ୍ୱାରା ଖଣି ସୁରକ୍ଷା ନିର୍ଦ୍ଦୟ ଭାବେ ଅବହେଳିତ ହେଉଛି । ସେମାନେ ଶ୍ରମିକମାନଙ୍କୁ ଶୋଷଣ କରୁଛନ୍ତି ଏବଂ କଳା



Digitized by srujanika@gmail.com

ବଜାରରେ କୋଇଲା ବିକ୍ରି କରୁଛନ୍ତି । ରାଜ୍ୟ ସରକାର ମଧ୍ୟ ଏଭଳି ଉତ୍ପାଦନରୁ ରୟାଲଟି ପାଉ ନାହାନ୍ତି । ରାଜ୍ୟ ସରକାରଙ୍କ କ୍ଷତି ପ୍ରକୃତରେ ସ୍ଥାନୀୟ ପ୍ରଶାସନ ଏବଂ କୋଲ୍ ଇଣ୍ଡିଆ ଅଫିସରଙ୍କ ପକେଟକୁ ଯାଉଛି । କୋଇଲା ଖଣି ପାର୍ଶ୍ୱବର୍ତ୍ତି ଅଞ୍ଚଳରେ ଦାରିଦ୍ର୍ୟତା ଏବଂ ବେକାରୀ ଏଭଳି ବେଆଇନ୍ ଖଣିରେ ଶ୍ରମିକମାନଙ୍କୁ କାର୍ଯ୍ୟ କରିବାକୁ ବାଧ୍ୟ କରୁଛି ।

କୋଇଲା ଖଣିରେ ଏପରି ଦୁର୍ନୀତି କୋଇଲା ଶିଳ୍ପରେ ବ୍ୟାପକ କ୍ଷତିର କାରଣ ହେଉଛି । କୋଇଲା ଶିଳ୍ପର ସମସ୍ତ ଅଫିସର ଦୁର୍ନୀତିଗ୍ରସ୍ତ ନୁହନ୍ତି, କିନ୍ତୁ ଯାହା ବା ହେଉଛି କୋଇଲା ଶିଳ୍ପକୁ କ୍ଷତି ଆଡ଼କୁ ଟାଣି ନେଇଯାଉଛି । କୋଇଲା ଶିଳ୍ପରେ ଭିଜିଲାନସ୍ ବିଭାଗ ପୂରାପୂରି ଅକ୍ଷମ । କୋଇଲା ଖଣି ଦ୍ୱାରା ଦିଆଯାଉ ଥିବା ଠିକା ଗୁଡ଼ିକ ମାଫିଆ ମାନେ ନିୟନ୍ତ୍ରଣ କରୁଛନ୍ତି ଏବଂ ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଓ କୋଇଲା ଶିଳ୍ପର ସ୍ୱାର୍ଥ ବିନିମୟରେ ସେମାନେ ବିପୁଳ ଟଙ୍କା ରୋଜଗାର କରୁଛନ୍ତି । କେତେକ ଦୁର୍ନୀତିଗ୍ରସ୍ତ ଅଫିସର ଅବାଞ୍ଛିତ ଟ୍ରେଡ଼ ୟୁନିୟନ ନେତାମାନଙ୍କୁ ଏହି ଦୁର୍ନୀତି ପ୍ରକ୍ରିୟାରେ ଜଡ଼ିତ କରିବାକୁ ଚେଷ୍ଟା କରିଥାନ୍ତି । କୋଇଲା ଶିଳ୍ପକୁ ଏଭଳି ଦୁର୍ନୀତିରୁ ରକ୍ଷା କରିବା ପାଇଁ ଟ୍ରେଡ଼ ୟୁନିୟନ ଆନ୍ଦୋଳନ ଏହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଦରକାର । ବସ୍ତୁତଃ କୋଇଲା ମନ୍ତ୍ରଣାଳୟକୁ ହିଁ କୋଇଲା ଶିଳ୍ପର ଏଭଳି ଦୁରାବସ୍ଥାର ଦାୟ ମୁଣ୍ଡାଇବାକୁ ପଡ଼ିବ ।

## ଚେକ୍‌ଅଫ୍ ପଦ୍ଧତିର ଅପବ୍ୟବହାର

ଚେକ୍ ଅଫ୍ ପଦ୍ଧତି ଟ୍ରେଡ଼ ୟୁନିୟନ ଓ ସଭ୍ୟମାନଙ୍କ ମଧ୍ୟରେ ଜୀବନ୍ତ ସଂପର୍କ ରକ୍ଷା କରୁ ନଥିବାରୁ ଏ.ଆଇ.ସି.ଡବ୍ଲ୍ୟୁ.ଏଫ୍ ଏବଂ ସି.ଆଇ.ଟି.ୟୁ ଏହାକୁ ଗ୍ରହଣ କରି ନଥାଏ । ଏଥି ସହ ଏହା ଚେକ୍ ଅଫ୍ ପଦ୍ଧତିର ଅପବ୍ୟବହାରକୁ ମଧ୍ୟ ବିରୋଧ କରୁଅଛି । ଉକ୍ତ ପଦ୍ଧତି ଏପରି ଯେ, ଜଣେ ଶ୍ରମିକର ଚେକ୍ ଅଫ୍ ଫର୍ମ ତିନି ବା ଚାରୋଟି ୟୁନିୟନ ପକ୍ଷରୁ ମ୍ୟାନେଜମେଣ୍ଟକୁ ଦିଆଯାଉଛି, ଯାହାକୁ କି ସେମାନେ ଗ୍ରହଣ କରୁଛନ୍ତି । ବିଭିନ୍ନ ୟୁନିୟନ ଦ୍ୱାରା ଦାଖଲ ହୋଇଥିବା ଏହି ଚେକ୍ ଅଫ୍ ଫର୍ମ ଗୁଡ଼ିକ ମ୍ୟାନେଜମେଣ୍ଟ ଦ୍ୱାରା ଖାରଜ ନହେଲେ ୟୁନିୟନର ଶକ୍ତି ନିର୍ଦ୍ଧାରଣ କରିବାରେ ସମସ୍ୟା ହୋଇଥାଏ । ସେମାନଙ୍କ ଅନୁମତି ବିନା ଦରମାରୁ ସଭ୍ୟ ଫି କଟାଯାଉଥିବା ସଂପର୍କୀୟ



Digitized by srujanika@gmail.com

ବହୁ ଗୁରୁତର ଅଭିଯୋଗ ଆମ ନଜରରେ ରହିଛି । କିନ୍ତୁ ମ୍ୟାନେଜମେଣ୍ଟ ଏହି ଅଭିଯୋଗକୁ ଗ୍ରହଣ କରନ୍ତି ନାହିଁ । ଶ୍ରମିକମାନଙ୍କର ଦସ୍ତଖତକୁ ଜାଲ୍ କରାଯାଉଥିବାର ଅଭିଯୋଗ ସାମନାକୁ ଆସିଲା ପରେ ବି ମ୍ୟାନେଜମେଣ୍ଟ ପକ୍ଷରୁ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇନାହିଁ, କାରଣ ସେମାନେ ଏହି ପଦ୍ଧତିକୁ ଉତ୍ସାହିତ କରିଥାନ୍ତି । ଏହା ମଧ୍ୟ ଉଲ୍ଲେଖନୀୟ ଯେ, ୟୁନିୟନର ଚାନ୍ଦା କେବଳ କେତେକ ଟ୍ରେଡ଼ ୟୁନିୟନ ନେତାଙ୍କ ରୋଜଗାରରେ ପରିଣତ ହୋଇଛି । କୋଲ୍ଇଣ୍ଡିଆ ମ୍ୟାନେଜମେଣ୍ଟ ଚେକ୍ ଅଫ୍ ସୁବିଧାର ଅପବ୍ୟବହାରକୁ ଅବିଳମ୍ବେ ବନ୍ଦ କରିବା ଦରକାର ।

## ଅସୁରକ୍ଷିତ କାର୍ଯ୍ୟ ପରିସ୍ଥିତି

ସର୍ବତ୍ର କୋଇଲା ଖଣିର ସୁରକ୍ଷା ବ୍ୟବସ୍ଥା ମଧ୍ୟ ଖୁବ୍ ଦୁର୍ବଳ ଏବଂ ପ୍ରତିବର୍ଷ କୋଇଲାଖଣି ଦୁର୍ଘଟଣାରେ ୧୦୦ରୁ ଉର୍ଦ୍ଧ୍ୱ ଶ୍ରମିକ ମୃତ୍ୟୁବରଣ କରୁଛନ୍ତି । ଏହି ଦୁର୍ଘଟଣା ଗୁଡ଼ିକରେ କୋଇଲା ଖଣି ଶ୍ରମିକର କ୍ଷତି ମଧ୍ୟ ସେମାନଙ୍କ ପାଇଁ ଉଦ୍‌ବେଗର କାରଣ । ଖଣି ମ୍ୟାନେଜମେଣ୍ଟ ମଧ୍ୟ ଏହି ଦୁର୍ଘଟଣାରୁ ଶିକ୍ଷା ଗ୍ରହଣ କରୁନାହାନ୍ତି । ଫଳରେ ବାରମ୍ବାର ଦୁର୍ଘଟଣା ଘଟୁଛି । ଖଣିର ଛାତ କିମ୍ବା ସାଇଡ୍ ଧସିବା, ଗ୍ୟାସ ପ୍ରବଣ ଖଣିରେ ବିସ୍ଫୋରଣ, ଖଣିରେ ବନ୍ୟା, ଭାରିଯାନ ଯନ୍ତ୍ରପାତି ଆଦି ଦୁର୍ଘଟଣା କୋଇଲା ଖଣିରେ ବାରମ୍ବାର ହେଉଛି । କୋଲ୍ଇଣ୍ଡିଆ ସେଫ୍‌ଟି ବୋର୍ଡ଼ର କାର୍ଯ୍ୟପଦ୍ଧତି ମୌଳିକ ଭାବେ ଉନ୍ନତ ହେବାର ଆବଶ୍ୟକତା ରହିଛି ।

କୋଇଲା ଖଣି ଶ୍ରମିକମାନଙ୍କ ମଧ୍ୟରେ ନିୟମୋକୋନ୍‌ସିସ୍ (ଫୁସ୍‌ଫୁସ୍ ଜନିତ ରୋଗ) ବ୍ୟାପୁଥିବା ବେଳେ ଏହି କେଶ୍ ଗୁଡ଼ିକ ପାଇଁ ଉପଯୁକ୍ତ ବନ୍ଦୋବସ୍ତ କରାଯାଉ ନାହିଁ । ଟ୍ରେଡ଼ ୟୁନିୟନ ଏବଂ ମ୍ୟାନେଜମେଣ୍ଟ ପକ୍ଷରୁ ବୃତ୍ତିଗତ ବିପଦ ପାଇଁ ଅଧିକ ଧ୍ୟାନ ଦେବା ଦରକାର । ପିଟ୍ ସେଫ୍‌ଟି କମିଟି ଗୁଡ଼ିକ ଠିକ୍ ଭାବେ କାର୍ଯ୍ୟକାରୀ ହେଉନଥିବା ବେଳେ ଶ୍ରମିକ ପରିଦର୍ଶକ ପଦ୍ଧତି ସାର୍ଥକ ଭାବେ କାର୍ଯ୍ୟକାରୀ କରାଯାଉ ନାହିଁ । କୋଇଲା ଶିଳ୍ପରେ ଚିକିତ୍ସା ସୁବିଧାର ଗୁଣାତ୍ମକ ଉନ୍ନତିର ଆବଶ୍ୟକତା ରହିଛି । ଖୁବ୍ ଶୀଘ୍ର ଡାକ୍ତର ଏବଂ ନର୍ସଙ୍କ ଅଭାବକୁ ଦୂର କରିବାକୁ ପଡ଼ିବ ।



Digitized by srujanika@gmail.com

## ଉତ୍ପାଦନ ଏବଂ ଉତ୍ପାଦିକତା ଫୋରମ୍ କେଉଁଆଡ଼େ ?

କୋଇଲା ଖଣିର ଉତ୍ପାଦନ ଏବଂ ଉତ୍ପାଦିକତା ବୃଦ୍ଧି କରିବାର ପର୍ଯ୍ୟାପ୍ତ ସୁଯୋଗ ରହିଛି । ପୂର୍ବରୁ ଏକ ଉତ୍ପାଦନ ଏବଂ ଉତ୍ପାଦିକତା ଫୋରମ୍ କାର୍ଯ୍ୟକାରୀ ହେଉଥିଲା । କିନ୍ତୁ ମ୍ୟାନେଜମେଣ୍ଟ ଏହାକୁ ଅକାମୀ କରିଦେଇଛନ୍ତି । କୋଇଲା ଖଣି କାର୍ଯ୍ୟର ଉନ୍ନତି ପାଇଁ ଉପଯୋଗୀ ଇନ୍‌ସେନ୍‌ଟିଭ ସ୍କିମ୍/ ଉତ୍ପାଦନ ନିୟମ ପ୍ରଚଳନର ଖୁବ୍ ଆବଶ୍ୟକତା ଅଛି । ଅତିରିକ୍ତ ଉତ୍ପାଦକତା ପାଇଁ ଯଥାର୍ଥ ପାରିଶ୍ରମିକ ବିନା କୌଣସି ଇନ୍‌ସେନଟିଭ ସ୍କିମ ସଫଳ ହୋଇପାରିବ ନାହିଁ । ସମସ୍ତ ଜାତୀୟ ଆବଶ୍ୟକତାକୁ ତୁଲାଇବା ପାଇଁ କୋଇଲା ଖଣିରେ ପ୍ରଚୁର ଉତ୍ପାଦନ ବର୍ତ୍ତମାନ ପରିସ୍ଥିତିରେ ପ୍ରଧାନ ଆବଶ୍ୟକତା । ଉପଯୁକ୍ତ ପରିଚାଳନା ନୀତି ଏବଂ ନିଷ୍ପତ୍ତି ତିଆରି ପ୍ରକ୍ରୀୟାରେ ଶ୍ରମିକ ମାନଙ୍କୁ ସାମିଲ କରିବା ବିନା ଭାରତରେ କୋଇଲା ଶିଳ୍ପ ଏହି ଲକ୍ଷ୍ୟରେ ପହଞ୍ଚି ପାରିବ ନାହିଁ ।

## ଦ୍ୱିପାକ୍ଷିକ ସଂସ୍ଥା (କମିଟି) ଗୁଡ଼ିକ ଶକ୍ତିଶାଳୀ କର

ଦ୍ୱିପାକ୍ଷିକ ସଂସ୍ଥା ଗୁଡ଼ିକ ଶକ୍ତିଶାଳୀ କରାଯାଇ ପାରିଲେ ଭାରତର ରାଷ୍ଟ୍ରାୟତ୍ତ କୋଇଲା ଉଦ୍ୟୋଗ ଦ୍ରୁତ ଉନ୍ନତି କରିପାରିବ । କେନ୍ଦ୍ରୀୟ, କଂପାନୀ ସ୍ତରୀୟ ସହିତ ଏରିଆ ଗୁଡ଼ିକର ଯୁଗ୍ମ କମିଟି ଗୁଡ଼ିକ କାର୍ଯ୍ୟକାରୀ ଭାବେ ପରିଚାଳିତ ହେବା ଦରକାର, ଯାହା ଫଳରେ ଯଥେଷ୍ଟ ଆଗରୁ ଉପଯୁକ୍ତ ନିଷ୍ପତ୍ତି ନିଆଯାଇପାରିବ ।

ଉପଯୁକ୍ତ ଶିଳ୍ପ ସଂପର୍କ ରକ୍ଷା କରିବାକୁ ହେଲେ ଦ୍ୱିପାକ୍ଷିକ ଫୋରମ୍‌ରେ ବିଚାରବିମର୍ଶ ନ କରି ଏକପାଖିଆ କାର୍ଯ୍ୟାନୁଷ୍ଠାନ ପାଇଁ ମ୍ୟାନେଜମେଣ୍ଟର ପ୍ରବଣତା ପରିତ୍ୟାଗ କରିବା ଦରକାର । ବୈଠକ ଗୁଡ଼ିକ ନିୟମିତ ଅନୁଷ୍ଠିତ ହୋଇ ନିଷ୍ପତ୍ତି ଗୁଡ଼ିକ ତୁରନ୍ତ କାର୍ଯ୍ୟକାରୀ ହେବା ଦରକାର । କୋଇଲା ଶିଳ୍ପର ଦୈନନ୍ଦିନ କାର୍ଯ୍ୟରେ କୋଇଲା ମନ୍ତ୍ରଣାଳୟର ଅବାଞ୍ଛିତ ହସ୍ତକ୍ଷେପ ମଧ୍ୟ ବନ୍ଦ ହେବା ଦରକାର । ନବରତ୍ନ ସ୍ଥିତି ସତ୍ତ୍ୱେ ବିଭିନ୍ନ ପ୍ରସଙ୍ଗରେ ନିଷ୍ପତ୍ତି ନେବାର ଯଥାର୍ଥ ଅଧିକାର କୋଲ୍ ଇଣ୍ଡିଆର ନାହିଁ । ବହୁ ବିଷୟ ମନ୍ତ୍ରଣାଳୟର ଫାଇଲ୍ ଚାଷ ଭିତରେ ହିଁ ସୀମାବଦ୍ଧ, ନିଷ୍ପତି ବିଳମ୍ବ ହେଉଛି । କୋଲ୍ ଇଣ୍ଡିଆ ଏକ ବାଣିଜ୍ୟିକ ଉଦ୍ୟୋଗ ହୋଇଥିଲେ ବି ପ୍ରଶାସନିକ ଅନିପୁଣତା ଏହାର ଅର୍ଥନୈତିକ କାର୍ଯ୍ୟପ୍ରଣାଳୀରେ ପ୍ରତିକୂଳ ପ୍ରଭାବ ପକାଇଥାଏ । ଶିଳ୍ପକୁ ଦ୍ରୁତ ଗତିରେ ଆଗେଇ ନେବାକୁ ହେଲେ ନବରତ୍ନ କଂପାନୀକୁ ଯଥାର୍ଥ ସ୍ୱନିୟନ୍ତ୍ରଣ ଅଧିକାର ପ୍ରଦାନ କରିବାକୁ ହେବ ।



Digitized by srujanika@gmail.com

କୋଲ୍ ଇଣ୍ଡିଆ ଏବଂ ଏହାର ସବ୍‌ସିଡ଼ିଆରି କଂପାନୀ ଗୁଡ଼ିକର ଅନେକ ଉଚ୍ଚ ଅଫିସରଙ୍କର ଘରୋଇ କଂପାନୀ ଏବଂ ଠିକାଦାରମାନଙ୍କ ସହିତ ମେଳି ଅଛି । କୋଲ୍‌ଇଣ୍ଡିଆ ଏବଂ ଏହାର ସବ୍‌ସିଡ଼ିଆରି କଂପାନୀର ଅବସର ପ୍ରାପ୍ତ ଅଫିସରମାନେ ଘରୋଇ କଂପାନୀ ମାନଙ୍କରେ ଯୋଗ ଦେଉଛନ୍ତି । ନିଜର ପୂର୍ବ ପ୍ରଭାବକୁ ଏଥିପାଇଁ ବ୍ୟବହାର କରୁଛନ୍ତି । ଏହି ସଂପର୍କ କୋଇଲା ଶିଳ୍ପରେ ଦ୍ୱିପାକ୍ଷିକ ସଂସ୍ଥା ଗୁଡ଼ିକୁ ଦୁର୍ବଳ କରିଥାଏ । କୋଇଲା ଶିଳ୍ପରେ ଟ୍ରେଡ଼ ୟୁନିୟନ ନେତାମାନଙ୍କୁ ସେମାନଙ୍କ ସାଧାରଣ ଟ୍ରେଡ଼ ୟୁନିୟନ କାର୍ଯ୍ୟକଳାପ ପାଇଁ ଦଣ୍ଡିତ ହେବାକୁ ପଡୁଛି । ୟୁନିୟନ କର୍ମକର୍ତ୍ତାଙ୍କୁ ତୁଚ୍ଛ କାରଣ ପାଇଁ ବଦଳି ଏବଂ ମ୍ୟାନେଜମେଣ୍ଟ ସପକ୍ଷବାଦୀଙ୍କୁ ଅନୁଚିତ ସୁବିଧା ସୁଯୋଗ ଦିଆଯାଉଛି । ଏହା ଶ୍ରମିକମାନଙ୍କ ମଧ୍ୟରେ ଅସନ୍ତୋଷ ସୃଷ୍ଟି କରିବା ସହିତ କୋଇଲା ଖଣିର କାର୍ଯ୍ୟ ଉପରେ ପ୍ରତିକୂଳ ପ୍ରଭାବ ପକାଇଥାଏ । ଟ୍ରେଡ଼ ୟୁନିୟନମାନେ ଏ ପ୍ରକାର ନୀତିକୁ ବିରୋଧ କରିବା ଦରକାର ଯାହା ଫଳରେ ସମସ୍ତ କୋଇଲା ଖଣିରେ ଟ୍ରେଡ଼ ୟୁନିୟନ ଅଧିକାର ସୁରକ୍ଷିତ ରହି ପାରିବ ।

ମିଳିତ ଟ୍ରେଡ଼ ୟୁନିୟନ ଆନ୍ଦୋଳନ, ଗୋଟିଏ ଭଲ ଚୁକ୍ତିନାମା କଲାପରେ ଆତ୍ମତୃପ୍ତିରେ ବୁଡ଼ି ଯିବା ଅନୁଚିତ୍ । କୋଇଲା ଶିଳ୍ପର ବର୍ତ୍ତମାନ ପରିସ୍ଥିତି ପାଇଁ ଟ୍ରେଡ଼ ୟୁନିୟନ ଆନ୍ଦୋଳନକୁ ଅନେକ ଆହ୍ୱାନର ସମ୍ମୁଖୀନ ହେବାକୁ ପଡ଼ିବ । ଟ୍ରେଡ଼ ୟୁନିୟନ ଆନ୍ଦୋଳନ କୋଇଲାଖଣି ଶ୍ରମିକମାନଙ୍କର ଜୀବନଧାରଣର ମାନରେ ଉନ୍ନତି ଆଣିବା ପାଇଁ ତାର ଉଦ୍ୟମକୁ ନିଶ୍ଚୟ ଦ୍ୱିଗୁଣିତ କରିବା ଆବଶ୍ୟକ । ସେମାନେ କୋଇଲା ଶିଳ୍ପ ପରି ରାଷ୍ଟ୍ରାୟତ୍ତ ଉଦ୍ୟୋଗକୁ ଶକ୍ତିଶାଳୀ କରିବା ପାଇଁ ସଂଗ୍ରାମ ଜାରି ରଖିପାରିଲେ ଭାରତବର୍ଷରେ ଆତ୍ମନିର୍ଭରଶୀଳ କୋଇଲା ଶିଳ୍ପ ମୁଣ୍ଡ ଟେକି ପାରିବ ।





Digitized by srujanika@gmail.com

## ପଢ଼ନ୍ତୁ

(୧) ପାର୍ଟି କର୍ମସୂଚୀ - ମୂଲ୍ୟ ଟ ୭-୦୦

(୨) ପାର୍ଟି ସମ୍ବିଧାନ ଓ ନିୟମାବଳୀ - ମୂଲ୍ୟ ଟ ୫-୦୦

(୩) କମ୍ୟୁନିଷ୍ଟ ପାର୍ଟିର ଇସ୍ତାହାର - ମୂଲ୍ୟ ଟ ୧୦-୦୦

(୪) ଜଣେ ଭଲ କମ୍ୟୁନିଷ୍ଟ କିପରି ହେବା - ମୂଲ୍ୟ ଟ ୧୫-୦୦

## ପଢ଼ନ୍ତୁ

# ସାମ୍ୟବାଦୀ

ଭାରତର କମ୍ୟୁନିଷ୍ଟ ପାର୍ଟି (ମାର୍କ୍ସବାଦୀ)
ଓଡ଼ିଶା ରାଜ୍ୟ କମିଟିର ମୁଖପତ୍ର

ବାର୍ଷିକ ଦେୟ - ଟ ୧୦୦-୦୦

ଠିକଣା - ୭/୧୩, ଟାଇପ୍-ବି (ରିଭାଇଜଡ଼୍), ୟୁନିଟ୍ -୯
ଭୁବନେଶ୍ୱର - ୭୫୧୦୨୨
ଫୋନ୍ / ଫ୍ୟାକ୍ସ ନଂ - (୦୬୭୪) ୨୫୪୨୫୦୪

---

**ପ୍ରକାଶକ** - ଭାରତର କମ୍ୟୁନିଷ୍ଟ ପାର୍ଟି (ମାର୍କ୍ସବାଦୀ) ଓଡ଼ିଶା ରାଜ୍ୟ କମିଟି
ଜେ-୭/୧, ଜୟଦେବ ବିହାର, ଭୁବନେଶ୍ୱର

*Digitized by srujanika@gmail.com*

ଟ୍ରେଡ୍ ୟୁନିୟନ ଆନ୍ଦୋଳନର
ମାସିକ ମୁଖପତ୍ର



# ଶ୍ରମିକ ଏକତା

ପାଠ କରନ୍ତୁ



Printed and Published by : Bishnu Mohanty, General Secretary, CITU Orissa State Committee, Qr. No. VR-5/1, Unit - III, Kharavel Nagar, Bhubaneswar - 751001, Mob. 9437041395



Digitized by srujanika@gmail.com